ସାମ୍ନାରେ ଜଗନ୍ନାଥ(ନାଟକ)


ନାଟ୍ୟକାର

ହେମେନ୍ଦ୍ର ମହାପାତ୍ର

'ଚନ୍ଦ୍ରଶାଳା', ସୁନହଟ, ବାଲେଶ୍ୱର



ପ୍ରକାଶିକା

ଶ୍ରୀମତୀ ସୁଷମା ମହାପାତ୍ର

ରଂଗମଂଚ, ସୁନହଟ

ବାଲେଶ୍ୱର

ଅକ୍ଷର ସଜ୍ଜା ଓ ପ୍ରଚ୍ଛଦ କଳ୍ପନା

ଦି କ୍ରିଏଟର

ଆକତପୁର, ବାଲେଶ୍ୱର

ମୁଦ୍ରଣ

ରଘୁନାଥ ଅଫସେଟ୍

ବାଲେଶ୍ୱର

ପ୍ରଥମ ପ୍ରକାଶ

ଅକ୍ଷୟ ତୃତୀୟା-୨୦୧୩

୧୩/୫/୧୩

ମୂଲ୍ୟ - ପଚାଶ ଟଂକା ମାତ୍ର


**SAMNARE JAGANNATH**

(Play)


Play Wright

Sri Hemendra Mohapatra
Chandrasala, Sunhat
Balasore



Published by

Smt. Sushama Mohapatra
Rangamancha, Sunhat,
Balasore

D.T.P. & Cover Designed by

The Creator
Akatpur, Balasore

Printed at

Raghunath Offset
Balasore

Date of First Publication

Akshay Trutiya-2013
13/05/2013

Price : Rupees Fifty only

// ଜୟ ଜଗନ୍ନାଥ //

ଓଡିଶାର ଅନ୍ୟତମ ସମ୍ଭ୍ରାନ୍ତ ନାଟ୍ୟାନୁଷ୍ଠାନ

 ଦ୍ୱାରା

ଓଡିଶା ସଂଗୀତ ନାଟକ ଏକାଡେମୀର
ରଂଗସଂଗମ ରାଜ୍ୟସ୍ତରୀୟ ନାଟକୋତ୍ସବ,
ରାଉରକେଲା (୨୫/୦୯/୨୦୧୨),

ଓଡିଶା ସଂଗୀତ ନାଟକ ଏକାଡେମୀ ଓ ନାଟ୍ୟସଂଘର
ନାଟ୍ୟଧାରା କାର୍ଯ୍ୟକ୍ରମ, ରବୀନ୍ଦ୍ର ମଣ୍ଡପ (୦୯/୧୨/୨୦୧୨),

ନାଟ୍ୟ ଚେତନାର ଆଞ୍ଚଳିକ ଲୋକ ନାଟକ ମହୋତ୍ସବ,
ବାରିପଦା (୦୨/୦୨/୨୦୧୨),

ରାଜ୍ୟସ୍ତରୀୟ ନାଟକୋତ୍ସବ, ବ୍ରହ୍ମପୁର (୨୮/୧୨/୨୦୧୨),
ଆଦି ବହୁ ନାଟକୋତ୍ସବରେ ସଫଳତାର ସହ
ମଂଚସ୍ଥ, ପ୍ରଶଂସିତ ଓ ପୁରସ୍କୃତ ଏକ ଭିନ୍ନ ଭାବନାର ନାଟକ

## 'ସାମ୍ନାରେ ଜଗନ୍ନାଥ'



## ସ୍ରଷ୍ଟା ପ୍ରଯୋଜିତ ସାମ୍ନାରେ ଜଗନ୍ନାଥର
## ଆଦ୍ୟ ମଂଚନର ଶିଳ୍ପୀ ସମୂହ

ଜଗନ୍ନାଥ - ଶ୍ରୀ ଅଜିତ କୁମାର ପଣ୍ଡା
ବଳଭଦ୍ର - ଶ୍ରୀ ନୀଳକଣ୍ଠ ସାହୁ
ସୁଭଦ୍ରା - ସୁସ୍ମିତା ମିଶ୍ର
ବ୍ରହ୍ମାନନ୍ଦ ପଣ୍ଡା - ଡା. ରମାକାନ୍ତ ନାୟକ
ଦାସିଆ - ଶ୍ରୀ ଶରତ ଶାଶ୍ୱତ ମହାନ୍ତି
ଅମର - ଶ୍ରୀ ଅର୍ଣ୍ଣବ ଦାସ
ପୁରୁଷୋତ୍ତମ - ଶ୍ରୀ ରତିକାନ୍ତ ମଲ୍ଲିକ
ପଦ୍ମା - ସୁମନା ପରିଡ଼ା

ସଂଗୀତ - ଶ୍ରୀ ମନୋରଂଜନ ପଣ୍ଡା
ଶ୍ରୀ ନନ୍ଦକିଶୋର ଦାସ
ଶ୍ରୀ ଭାସ୍କର ଚନ୍ଦ୍ର ଖିଲାର

ମଂଚ ଓ ରୂପ - ଶ୍ରୀ ସନ୍ତୋଷ କମିଳା(ସନା)

ନିର୍ଦ୍ଦେଶନା - ଶ୍ରୀ ହେମେନ୍ଦ୍ର ମହାପାତ୍ର

# ସ୍ୱଗତୋକ୍ତି

ନାଟକଟିଏ ରଚନାପରେ ଅଭ୍ୟାସ କୋଠରୀ(reharsal)କୁ ଯାଏ। ସେଠାରେ ନିର୍ଦ୍ଦେଶକ, କଳାକାରମାନଙ୍କ ହାତରେ ଘଷିମାଜି ହୋଇ ମଂଚରେ ଛିଡ଼ାହୁଏ।ଦର୍ଶକମାନଙ୍କ ଆଗରେ ନାଚେ ଖେଳେ ହସେ କାନ୍ଦେ। ଦର୍ଶକଙ୍କ ତାଳିମାଡ ପାଇଲାପରେ ସାହିତ୍ୟରେ ସାମିଲ ହେବାର ଯୋଗ୍ୟତା ହାସଲକରେ। 'ସାମନାରେ ଜଗନ୍ନାଥ' କ୍ଷେତ୍ରରେ ଆଜି ସେ ସମୟ ଉପନୀତ। ଓଡିଆ ସାରସ୍ୱତ ଭଣ୍ଡାରରେ ମିଶିଯିବାର ଲକ୍ଷ୍ୟ ନେଇ ନିଜର ମୁଦ୍ରିତ ରୂପ ପ୍ରକାଶ କରିବାକୁ ବ୍ୟଗ୍ର। ଏମିତି ଏକ ଶୁଭ ଲଗ୍ନରେ ସାମାନ୍ୟ କିଛି ନ କହିଲେ ହୁଏତ 'ସାମନାରେ ଜଗନ୍ନାଥ'ର ସାରସ୍ୱତ ଯାତ୍ରାରେ ବିଘ୍ନ ଘଟିବକି ଏମିତି ଏକ ଅମୂଳକ ଆଂଶକାରେ ବ୍ୟାକୁଳିତ ହୋଇ କଲମ ଧରିଛି। କଣ କହିବି ପ୍ରଭୋ ଜଗନ୍ନାଥ ଯାହା କହିବେ ତାହା ହିଁ କହିବି।

ଓଡିଶା ବାହାରେ ଓଡିଶାକୁ ଓଡିଶା ବୋଲି ଯେତିକି ଜାଣନ୍ତି ତାଠୁ ବେଶୀ ଜାଣନ୍ତି 'ଜଗନ୍ନାଥ ଦେଶ' ବୋଲି। ବାସ୍ତବିକ ଆମେ ଏମିତି ଏକ ଭୂମିରେ ଭୂମିଷ୍ଟ ହୋଇଛୁ ଯୋଉଁ ଭୂମିରେ ଜଗତର ନାଥ ଜଗନ୍ନାଥ ବାସ କରନ୍ତି। ଯୋଉ ଭୂମି ଜଗନ୍ନାଥ ନାମରେ ପରିଚିତ। ତେଣୁ ଏ ଭୂମିର ସମାଜ ସାହିତ୍ୟ ଓ ସଂସ୍କୃତି ଜଗନ୍ନାଥ କୈନ୍ଦ୍ରିକ ହେବା ସ୍ୱାଭାବିକ। ଜଗନ୍ନାଥଙ୍କ ବିନା ଏ ଜାତିର ସତ୍ତା ଅକଳ୍ପନୀୟ। ଏ ମାଟିର ଜନଜୀବନ ସହିତ ଜଗନ୍ନାଥ ଯେ ଓତୋପ୍ରୋତୋ ଭାବରେ ଜଡିତ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ତେଣୁ ନାଟକ ବା ସେଥିରୁ ବାଦ୍ ପଡନ୍ତା କେମିତି। ସାହିତ୍ୟ ସଂଗୀତ ନାଟକରେ ଜଗନ୍ନାଥ ଚେତନାକୁ ଏକ ଭିନ୍ନଭାବରେ ପ୍ରକାଶ କରିବାର ପ୍ରୟାସ କରାଯାଇଛି।

ମଂଚ ନାଟକ ସର୍ବଦା ମଣିଷର ମୌଳିକ ସମସ୍ୟା ଉପରେ କଟାକ୍ଷପାତ କରିଥାଏ, ଦିଗହରା ଜୀବନକୁ ନୂତନ ଦିଗ ନିର୍ଣ୍ଣୟ କରିବାରେ ସହାୟତା କରିଥାଏ। ଅତୀତରେ ମଣିଷ ନିଜର ଧର୍ମୀୟ ଉନ୍ମାଦନା, ଐତିହାସିକ ବିଡମ୍ବନା ଏବଂ ପାରଂପରୀକ ଚିତ୍ର ପ୍ରଦାନ କରିବାରେ ନାଟକକୁ ମାଧ୍ୟମ କରି ଆସୁଥିଲା କାଳକ୍ରମେ ତାହା ଜୀବନ ସଂଗ୍ରାମର ବାର୍ତ୍ତାବହର ଭୂମିକା ନିର୍ବାହ କଲା, ନିକଟ ଅତୀତରେ

ମଣିଷ ପେଟ ପିଠି ପାଇଁ ସଂଗ୍ରାମ କରୁଥିଲା, ତେଣୁ ନାଟକ ଥିଲା ପେଟ ପିଠି କୈନ୍ଦ୍ରିକ। ଅଧୁନା ମଣିଷ ଆଗରେ ସେ ସମସ୍ୟା ଏତେ ଉତ୍କଟ ନୁହେଁ। ଆଜି ମଣିଷ ଯେଉଁ ସମସ୍ୟା ଦେଇ ଗତି କରୁଛି ତାର ଭୟାବହତା ଭବିଷ୍ୟତ କହିବ। ସେ ସମସ୍ୟାଟି ହେଲା ନୈତିକ ସଂକଟ। ପାଶ୍ଚାତ ସଭ୍ୟତାର ବସ୍ତୁବାଦୀ ଚିନ୍ତାଧାରାରେ ପ୍ରଭାବିତ। ଏ ମାଟିର ମଣିଷ ଆଜି ଅର୍ଥ ସଂପଦ ନିକଟରେ ନିଜର ନୈତିକତାକୁ ବଂଧା ପକାଇବାରେ ସାମାନ୍ୟତମ କୁଣ୍ଠାବୋଧ କରୁନାହିଁ। ଭୌତିକ ସୁଖର ପ୍ରଲୋଭନରେ ଏ ଜାତି ତାର ନୈତିକ ମୂଲ୍ୟବୋଧ ତଥା ମୌଳିକ ପରଂପରାକୁ ଏପରିକି ତାର ସାଂସ୍କୃତିକ ପ୍ରାଣବିନ୍ଦୁ ଜଗନ୍ନାଥଙ୍କୁ ଆନ୍ତର୍ଜାତୀୟ ବଜାରରେ ନିଲାମ କରି ଧିରେ ଧିରେ ନିଃସ୍ୱ ଦରିଦ୍ର ହେବାରେ ଲାଗିଛି। ଜଗନ୍ନାଥଙ୍କ ମହାପ୍ରସାଦ ନିଜେ ଖାଉନି, ତାକୁ ବିକିଦେଇ ସେହି ପଇସାରେ ମଦ ମାଂସ ଭକ୍ଷଣ କରୁଛି। ଭଜନ ନିଜେ କରୁନି, ଭଜନ ବିକି ବଡ ଲୋକହଉଛି। ଯୋଉ ଜାତିର ସ୍ୱାଭିମାନ ରକ୍ଷା କରିବାକୁ ପ୍ରଭୋ ନିଜେ ଘୋଡ଼ାଚଢି ଯୁଦ୍ଧଯାତ୍ରା କରିଥିଲେ, ସେ ଜାତିର ଏମିତି ଅଧପତନରେ ପ୍ରଭୁ କଣ ଚୁପ୍ ହୋଇ ବସି ରହିବେ ? ସାମ୍‌ନାକୁ ଆସନ୍ତି ଜଗନ୍ନାଥ।

ଲେଖା ସରିଲା, ମଂଚନ ? ସ୍ରଷ୍ଟାରବଂଧୁମାନଙ୍କ ଗହଣରେ ପାଣ୍ଡୁଲିପି ପାଠ କରାଗଲା, ଲକ୍ଷ୍ୟ କଲିଯେ ହୁଏତ ପାଣ୍ଡୁଲିପିଟି ସେମାନଙ୍କୁ ସେତେଟା ଆକର୍ଷିତ କରି ପାରିଲାନି। କେହି କେହି କହିଲେ ଶବ୍ଦପ୍ରଧାନ ନାଟକ ରେଡିଓରେ ଭଲ ଲାଗିବ। ମଂଚ ପାଇଁ ସେତେଟା ଉପଯୋଗୀ ହେବନି। ତଥାପି ବିକଳ୍ପ ନଥିବାରୁ ସ୍ରଷ୍ଟାର ୩୦ତମ ବାର୍ଷିକ ନାଟକୋତ୍ସବରେ ମଂଚସ୍ଥ ପାଇଁ ମନସ୍ଥ କଲୁ, କିନ୍ତୁ ନିର୍ଦ୍ଦେଶନା ଦାୟିତ୍ୱ ମୋତେ ନେବାକୁ ପଡିଲା। ବାଧ୍ୟ ହେଲି। ଅନେକ ପ୍ରତିଷ୍ଠିତ କଳାକାରମାନେ ଅଭିନୟ ପାଇଁ ପଛେଇଲେ, ତଥାପି ଅଣ୍ଟା ଭିଡିଲି। ଅଭ୍ୟାସ ବି ସେମିତି ନିୟମିତ ସୁରୁଖୁରୁରେ ହୋଇପାରୁନଥାଏ। ଯେମିତି ହେଉ ସେଦିନ ଆସିଲା ଦର୍ଶକ ଗ୍ୟାଲେରି ଭରପୂର। ନାଟକ ଆରମ୍ଭ ହେଲା। ମୁଁ ତ ଭିତରେ ଥାଏ, କେବଳ କରତାଳି ଓ ଜୟ ଜଗନ୍ନାଥ ଧ୍ୱନୀରୁ ନାଟକର ସଫଳତାକୁ ଅନୁଭବ କରୁଥାଏ। ଚାହୁଁ ଚାହୁଁ ଦୁଇଘଣ୍ଟା ବିତିଗଲା, ତାପରେ ତ କେବଳ ପ୍ରଶଂସା। ଏମିତି ନାଟକ

ଆମେ ଦେଖିନୁ। ଏ ନାଟକ ସମଗ୍ର ଓଡିଶାରେ ମଂଚସ୍ଥ ହେବା ଦରକାର। ରବୀନ୍ଦ୍ର ମଣ୍ଡପରେ କେବେ କରୁଛନ୍ତି ? ଏମିତି ଅନେକ ମତ ମନ୍ତବ୍ୟକୁ ନେଇ ବେଶ୍ ସନ୍ତୁଷ୍ଟ ହେଲୁ। ତତ୍‌ପରେ ଏମିତି କଥା କଥାକେ ସମସ୍ତେ କହନ୍ତି 'ଜଗନ୍ନାଥ' ଆଉଥରେ କରିବା। ଚଡକ ପଡିଲା, ଏଥିରେ ଅଭିନୟ କରୁଥିବା ଜଣେ ବିଶିଷ୍ଟ କଳାକାର 'ବିଧୁ' ହଠାତ୍ ଚାଲିଗଲା, ତେଣୁ ସେହି ଦୁଃଖରେ ପୁଣି ଗୋଟେ ବର୍ଷ ନୀରବ ରହିଲୁ। ତା ପର ବର୍ଷ ଅର୍ଥାତ୍ ୨୦୧୧ ଡିସେମ୍ବରରେ ପୁଣି ହେଲା ଜଗନ୍ନାଥ। ଓଃ, ଏଥର ଆହୁରୀ ଭଲ, ଆହୁରୀ ସଫଳତା, ଦର୍ଶକ ମହଲ ସଂପୂର୍ଣ୍ଣ ବିହ୍ୱଳିତ ହୋଇପଡୁଥାନ୍ତି। ସମସ୍ତଙ୍କ ଦାବୀ, ଏ ନାଟକ ବାହାରକୁ ଯାଉ। ସୁଯୋଗ ମିଳିଲା। ନାଟ୍ୟ ଚେତନାର ଲୋକନାଟ୍ୟ ମେଳା ବାରିପଦାରୁ ନିମନ୍ତ୍ରଣ ଆସିଲା। ସେତେବେଳକୁ କଳାକାରମାନେ ସଂପୂର୍ଣ୍ଣ ଉତ୍ସାହିତ ହୋଇ ପଡିଥାନ୍ତି। ନାଟକ ପ୍ରଦର୍ଶନରେ ରହିଥିବା ତ୍ରୁଟି ଗୁଡିକ ଧିରେ ଧିରେ ସଂଶୋଧିତ ତଥା ପରିମାର୍ଜିତ ହେଉଥାଏ। ବାରିପଦାରେ ଅଶାତୀତ ସଫଳତା ପାଇଲୁ। ତାପରେ ଓଡିଶା ସଂଗୀତ ନାଟକ ଏକାଡେମୀର ରଂଗସଂଗମ କାର୍ଯ୍ୟକ୍ରମକୁ ସାମ୍‌ନାରେ ଜଗନ୍ନାଥ ମନୋନୀତ ହେଲା। ଏଥିରେ କଳାକାରଙ୍କ ଉଦ୍ଦୀପନା କହିଲେ ନସରେ, କାରଣ ରାଉରକେଲା ପରି ମଂଚନାଟକର ରାଜଧାନୀରେ ସାମନାରେ ଜଗନ୍ନାଥ ପ୍ରଦର୍ଶିତ ହେବ। ଦଶଗୁଣ ଉତ୍ସାହରେ ସମସ୍ତେ ଲାଗିଲେ, ନାଟକ ଏକଦମ୍ ଶୀର୍ଷକୁ ଉଠିଗଲା। ନାଟକ ପରେ ସେଦିନର ଆନନ୍ଦ ଭାଷାରେ ବର୍ଣ୍ଣନା କରିବା କଷ୍ଟକର। ମୋ ସାମ୍‌ନାରେ ଲୋକମାନେ ଆସି କହିଲେ - ହେମେନ୍ଦ୍ରବାବୁ, ଆଉ ଯଦି ନାଟକ ନ ଲେଖନ୍ତି, ଏଇ ଗୋଟେ ନାଟକ ତାଙ୍କୁ ଅମର କରି ରଖିବ। ତାପରେ ନାଟ୍ୟଧାରା କାର୍ଯ୍ୟକ୍ରମରେ ରବୀନ୍ଦ୍ର ମଣ୍ଡପରେ ମଂଚସ୍ଥ ହେଲା ସାମନାରେ ଜଗନ୍ନାଥ, ଏମିତି ଆମେ ସ୍ରଷ୍ଟା ତରଫରୁ ଓଡିଶାର ବିଭିନ୍ନ ମଂଚରେ ମଂଚସ୍ଥ କଲୁ। କେବଳ ସ୍ରଷ୍ଟା କାହିଁକି ରାଉରକେଲାର ସ୍ୱସ୍ତିଝଂକାରର ବଂଧୁ ରାଜୀବ ପାଣୀଙ୍କ ଅନୁରୋଧ ଏଡି ପାରିଲିନି। ତାଙ୍କୁ ସମ୍ମତି ଦେଲି ସେ ତାଙ୍କ ଅନୁଷ୍ଠାନ ଦ୍ୱାରା ରାଉରକେଲାରେ ବିଭିନ୍ନ ସ୍ଥାନରେ ମଂଚସ୍ଥ କଲେ ଶେଷରେ ଦାମନଯୋଡିଠାରେ ପଞ୍ଚପଟମାଳୀ ନାଟକ ମହୋତ୍ସବରେ ଅଂଶ ଗ୍ରହଣ କରି ଗୁଡାଏ ପୁରସ୍କାର ପାଇଲେ। ଶେଷରେ ଗତ ଏପ୍ରିଲ ୨୮ରେ ଓକିଲ

ଦିବସରେ ବାଲେଶ୍ୱର ବାର ଏସୋସିଏସନ୍ ପକ୍ଷରୁ ମଧ୍ୟ ସାମ୍ନାରେ ଜଗନ୍ନାଥ ମଂଚସ୍ଥ ହୋଇ ଶହ ଶହ ଦର୍ଶକ ମଧ୍ୟରେ ଜଗନ୍ନାଥ ଚେତନାର ପୁଲକ ଜାଗ୍ରତ କରିବାରେ ସଫଳ ହୋଇଛି। ସାମନାରେ ଜଗନ୍ନାଥ ପାଇଁ ଓଡିଶାର ଅନ୍ୟ ବହୁ ସ୍ଥାନରୁ ନିମନ୍ତ୍ରଣ ଆସିବାରେ ଲାଗିଛି। ଆମେ ତ ଆଉ ପେଷାଦାର ନୋହୁଁ। ତେଣୁ ସମସ୍ତଙ୍କ ନିକଟରେ ସାମନାରେ ଜଗନ୍ନାଥ ପହଞ୍ଚାଇବା ପାଇଁ ତାର ମୁଦ୍ରଣ ରୂପ ପ୍ରକାଶ କରିବାର ପ୍ରୟାସ କରିଛି।

ଏହି ନାଟକର ପ୍ରକାଶ କାଳରେ ଅନେକ ବଂଧୁ ଶୁଭେଚ୍ଛୁଙ୍କୁ ଓ ସ୍ମରଣ କରିବାର ତଥା କୃତଜ୍ଞତା ଜଣାଇବାର ଅଛି। ବିଶେଷତଃ ଏ ନାଟକର ସଫଳ ପ୍ରଯୋଜନା ନିମନ୍ତେ ଯେଉଁମାନଙ୍କ ଅବଦାନ ଅବିସ୍ମରଣୀୟ ତାଙ୍କୁ ତ ସ୍ମରଣ କରିବାର କଥା ପ୍ରଥମତଃ ଜଣେ ନାଟ୍ୟକାର ତଥା ନିର୍ଦ୍ଦେଶକ ଭାବରେ ମୁଁ ମୁକ୍ତ କଣ୍ଠରେ କହିବାକୁ ତିଳେହେଲେ କୁଣ୍ଠାବୋଧ କରିବି ନାହିଁ ଯେ ସାମ୍ନାରେ ଜଗନ୍ନାଥର ସମସ୍ତ ଚରିତ୍ରରେ ଅଭିନୟ କରିଥିବା ପ୍ରତ୍ୟେକଟି କଳାକାର ନିଜ ନିଜ ଚରିତ୍ର ପ୍ରତି ବେଶ୍ ଯତ୍ନବାନ ହେବା ସଂଗେ ସଂଗେ ଚରିତ୍ରମାନଙ୍କୁ ନ୍ୟାୟ ଦେବାରେ ସମର୍ଥ ହୋଇଛନ୍ତି। ଦାସିଆ ଭୂମିକାରେ ଶରତ ଚନ୍ଦ୍ର ମହାନ୍ତିଙ୍କ ଭାବବିହ୍ୱଳ ଅଭିନୟ ଦର୍ଶକମାନଙ୍କୁ ତ ବିଭୋର କରିଥିଲା। ମୁଁ ନିଜେ ମଧ୍ୟ ଆତ୍ମହରା ହୋଇପଡିଥିଲି। କିନ୍ତୁ ଦୁର୍ଭାଗ୍ୟ ବଶତଃ ପ୍ରଥମ ଦୁଇଟି ମଂଚନ ପରେ ସେ ଆଉ ସେ ଭୂମିକାରେ ଅଭିନୟ କରିପାରିନଥିଲେ। ତାଙ୍କ ସ୍ଥାନରେ ପ୍ରଥମେ ବଂଧୁ ପରମାନନ୍ଦ ସାହୁ ଓ ପରେ ବଂଧୁ ସଂଗ୍ରାମ କେଶରୀ ମହାନ୍ତି ଉକ୍ତ ଚରିତ୍ରରେ ଅବତୀର୍ଣ୍ଣ ହୋଇ ଦର୍ଶକ ମହଲରେ ବେଶ୍ ଆଦୃତ ହୋଇ ପାରିଥିଲେ। ସେମିତି ବ୍ରହ୍ମାନନ୍ଦ ପଣ୍ଡା ଚରିତ୍ରରେ ଆଉ ଜଣେ ବିଶିଷ୍ଟ ଶିଳ୍ପୀ ଡାକ୍ତର ରମାକାନ୍ତ ନାୟକଙ୍କ ସ୍ୱାଭାବିକ ଅଭିନୟ, ତାଙ୍କ ପୁତ୍ର ପୁରୁଷୋତ୍ତମ ଭୂମିକାରେ ଆଉ ଜଣେ ଉଦୀୟମାନ ଶିଳ୍ପୀ ରତିକାନ୍ତ ମଲ୍ଲିକ ମଧ୍ୟ ଜଣେ ଅଭିଜ୍ଞ ଶିଳ୍ପୀର ପରିଚୟ ଦେଇଛନ୍ତି। ସେହିପରି ଅମର ଭୂମିକାରେ ଅର୍ଣ୍ଣବ କୁମାର ଦାସଙ୍କ ଅଭିନୟ ଦକ୍ଷତାର ଜବାବ ନାହିଁ। ସେମିତି ନାୟିକା ଭୂମିକାରେ ସୁମନା ପରିଡା। ଚମତ୍କାର ଅଭିନୟ। ପଦ୍ମାବତୀ ଚରିତ୍ର ପାଇଁ ସୁମନାଠ ବିକଳ୍ପ ପାଇବା କଷ୍ଟକର। ଜଗନ୍ନାଥ ଭୂମିକାରେ ଅଜିତପଣ୍ଡା, ବଳଭଦ୍ର ଭୂମିକାରେ ନୀଳକଣ୍ଠ

ସାହୁ ଏବଂ ସୁଭଦ୍ରା ଭୂମିକାରେ ସୁସ୍ମିତା ମିଶ୍ର(ମାମା)ଙ୍କର ସାବଲୀଳ ଅଭିନୟ ଦର୍ଶକ ମହଲରେ ଯେତିକି ଆନନ୍ଦ ଦେଇଛି, ସେତିକି ଆଲୋଡନ ସୃଷ୍ଟି କରିଛି। ଅଭିନୟକୁ ଅଧିକ ଜୀବନ୍ତ କରି ପରିବେଷଣ କରିବାରେ ମୁଖ୍ୟ ଭୂମିକା ରହିଛି ଗୀତ ଓ ସଂଗୀତର। ସଂଗୀତରେ ମନୋରଂଜନ ପଣ୍ଡା ଓ ନନ୍ଦ କିଶୋର ଦାସଙ୍କ କଳାତ୍ମକ ଦକ୍ଷତା, ବିଶେଷ କରି ଭାସ୍କର ଖିଲାରଙ୍କର ସୁଲଳିତ କଣ୍ଠର ଯାଦୁକରୀ ସ୍ପର୍ଶ ନାଟକର ଗାମ୍ଭୀର୍ଯ୍ୟ ବଢାଇବାରେ ସହାୟତା କରିଥିଲା। ସଫଳତାର ଅନ୍ୟ ଏକ ଦିଗ ମଂଚ। ଓଡିଶାର ଜଣେ ଆଗଧାଡିର ମଂଚ ଶିଳ୍ପୀ ସନ୍ତୋଷ କମିଲା(ସନା)ଙ୍କର ମଂଚ ସଜ୍ଜା ଓ ରୂପସଜ୍ଜା ବେଶ୍ ଉଚ୍ଚ କୋଟୀର ହୋଇଥିଲା। ଏ ସମସ୍ତଙ୍କର ଅବଦାନ ନିଶ୍ଚିତ ସ୍ମରଣୀୟ।

ଏତଦ୍ ଭିନ୍ନ ନାଟକର ସହାୟତା କରିଥିବା ବଂଧୁ ଗୌରୀ ଶଂକର ସାହାଣୀ, ମନୋରଂଜନ ଦାସ, ସତ୍ୟବ୍ରତ ମହାନ୍ତି, ଗିରିଜା ଶଂକର କର, ସୁଲଳିତ କର, ପ୍ରସନ୍ନ ଦାସ, ଉମେଶ ଚନ୍ଦ୍ର ରାଉତଙ୍କର ଅବଦାନ ତଥା ସ୍ରଷ୍ଟାର ସମସ୍ତ ସଦସ୍ୟଙ୍କ ଆକୁଣ୍ଠ ସହଯୋଗ ଭୁଲିବାର ନୁହେଁ।

ଏ ନାଟକ ଜାତୀୟ ଚେତନା ଜାଗ୍ରତରେ ସହାୟକ ହେଉ ଏତିକି କାମନା କରି ରହୁଛି।

*- ନାଟ୍ୟକାର -*



# ପ୍ରଥମ ଦୃଶ୍ୟ

ସମଗ୍ର ମଂଚକୁ ତିନୋଟି ଅଂଚଳ ଭାବରେ ଭାଗ କରାଯାଉ, ପଶ୍ଚାତଭାଗର ବାମ ଅଂଚଳ ଏକ ଜଗନ୍ନାଥ ମନ୍ଦିରର ଗର୍ଭଗୃହ ଯେଉଁଥିରେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ଭାବରେ ବିରାଜିତ ଓ ଦକ୍ଷିଣ ଅଂଚଳଟି ମୁଖ୍ୟ ପୂଜକ ବ୍ରହ୍ମାନନ୍ଦ ପଣ୍ଡାଙ୍କ ଘରର ସମ୍ମୁଖ, ଉଭୟ ଅଂଚଳ ମଝିରେ ଏକ ଝଙ୍କାଳିଆ ଗଛ, ଯାହାର ଉଭୟ ପାର୍ଶ୍ୱ ରାସ୍ତା ।

ସମ୍ମୁଖ ଭାଗରେ ବାମ ଅଂଚଳ ମନ୍ଦିର ସମ୍ମୁଖସ୍ଥ ଅଂଚଳ ଭାବରେ ଓ ଦକ୍ଷିଣ ଅଂଚଳ ମୁକ୍ତସ୍ଥାନ ଭାବରେ ବ୍ୟବହୃତ ହେବ । ଗର୍ଭଗୃହକୁ ଆଲୋକ ଆସେ କୌଣସି ଏକ ସଂଧ୍ୟାରେ, ଦେଖାଯାଏ ମୁଖ୍ୟ ପୂଜକ ବ୍ରହ୍ମାନନ୍ଦ ପଣ୍ଡା ଦିଅଙ୍କ ଆରତୀ ଶେଷକରି ବାହାରକୁ ଚାହିଁଲେ – ଦାସିଆ ନାମକ ଭକ୍ତ ଜଣକ ପ୍ରଣାମ ଜଣାନ୍ତି ।

ବ୍ରହ୍ମାନନ୍ଦ - କିରେ ଦାସିଆ ଶୋଇ ଗଲୁକି ?

ଦାସିଆ - ଏଁ ! କଅଣ କହିଲ ଗୋସାଇଁ, ଦିଅଁଙ୍କ ପହୁଡ ପଡିନି, ଦାସିଆ ଫେଏରେ ଶୋଇଯିବ ।

ବ୍ରହ୍ମାନନ୍ଦ - କାହିଁ, ଆରତୀତ ସରିଲା, ଭଜନ ପଦେ ଶୁଭିଲାନି କି ଖଂଜଣି ଥରେ ବାଜିଲାନି ।

ଦାସିଆ - କଣ କହିଲ, ଭଜନ ! ହଁ ଏଇ ଗାଇଲି ଭଜନ (ଦାସିଆ ଭଜନ ଗାଏ) (ଥକାମନ ଚାଲଯିବା, ଚକାନୟନ ଦେଖିବା)

(ଦାସିଆ ଭଜନ ଗାଇବାକୁ ଆରମ୍ଭ କରନ୍ତେ ବ୍ରହ୍ମାନନ୍ଦ ଅନ୍ୟାନ୍ୟ ପୂଜା ବିଧି ଶେଷକରି ଦାସିଆ ନିକଟକୁ ଆସନ୍ତି ।)

ଦାସିଆ - ଗୋସାଇଁ ଜଗା ଶୋଇ ପଡିଲା ?

ବ୍ରହ୍ମାନନ୍ଦ - କେତେବେଳୁ ଶୋଇ ପଡିଲାଣି, ସତରେ ଦାସିଆ ତୋ ଗୀତ ତା କାନରେ ନପଡିଲେ ଜଗା ଆଖିକୁ ନିଜ ଆସେନିରେ ।

ଦାସିଆ - ତାରି ଗୀତ ସିଏ ଶୁଣୁଛି ମୁଁ ଯାହା ମଝିରେ ଥାଇ ଖଂଜଣି ପିଟୁଛି ।

ବ୍ରହ୍ମାନନ୍ଦ - ହଉ ତୁ କଣ ଘରକୁ ଯିବୁନି ?

ଦାସିଆ - କଣ କହିଲ ଗୋସେଇଁ ଘର ? ଏଇଟା କଣ ଆଉ ଘର ନୁହେଁ ?

ବ୍ରହ୍ମାନନ୍ଦ - କିଏ ମନା କଲା, ତଥାପିତ ନିଜର ସ୍ତ୍ରୀ ପିଲାଛୁଆ ସଂସାର ।

ଦାସିଆ - ନା ଗୋସାଇଁ ନା, ମୋତେ ଆଉ ସେ ପଙ୍କ ଭିତରକୁ ଠେଲି ଦିଅନା ମୁଁ ଆଉ ସେ ମିଛମାୟା ଭିତରେ ଘାଣ୍ଟି ହେବାକୁ ଚାହେଁନା । ମୁଁ ଭଲ ମୋ ଜଗା ଭଲ, ହେଲେ ଗୋସାଇଁ ମୁଁ ଏ ମନ୍ଦିରରେ ରହୁଛି ବୋଲି ତମର କିଛି ଅସୁବିଧା ହେଉନି ତ ?

ବ୍ରହ୍ମାନନ୍ଦ - ଆରେ ନା ନା ତୁ ରହିଲେ ବରଂ ମୁଁ ନିଶ୍ଚିନ୍ତ ରହିପାରୁଛି ମୁଁ ନହି ନଥିଲେ ବି ଦାସିଆତ ଅଛି ।

ଦାସିଆ - ନା ନା ସେମିତି ଯଦି କିଛି ହବ ମୋତେ କୁହ ମୁଁ ନହେଲେ ସେ ଦାଣ୍ଡ ମଝିରେ ଥିବା ଗଛ ମୂଳରେ ବସି ଖଂଜଣି ପିଟିବି ।

ବ୍ରହ୍ମାନନ୍ଦ - କାହିଁକି, ଏତେବଡ ମନ୍ଦିର ଥାଉଥାଉ ତୁ କାହିଁକି ଦାଣ୍ଡଟାରେ ବସିବୁ ।

ଦାସିଆ - ଗୋସାଇଁ ତମେ ସତ କହୁଛ ? ମୋତେ କେବେ ମନ୍ଦିରରୁ ତଡି ଦବନି ?

ବ୍ରହ୍ମାନନ୍ଦ - ଛି ? ଛି ? କି କଥାତୁ ତୁଣ୍ଡରେ ଧରୁଛୁ ? ଏଁ ?

ଦାସିଆ - ତୁମକୁ କୋଟି ପ୍ରଣାମ ଗୋସାଇଁ

ବ୍ରହ୍ମାନନ୍ଦ - ହଉ ମୁଁ ତ ଏଥର ଯିବି । ମନ୍ଦିର ଖୋଲା ରହିଲା

ଦାସିଆ - ନାଇଁ ଗୋସାଇଁ ମନ୍ଦିର ଚାବି ଦେଇଦିଅ, ମୁଁ ଏଇଠି ବାହାରେ ଚସୁଛି ।

ବ୍ରହ୍ମାନନ୍ଦ - ଆରେ ! ତୁ ତ କିଛି ଖାଇନୁ ? କଣ ଖାଇବୁ ?

ଦାସିଆ - ମୋ ଖାଇବା କଥା ଜଗା ବୁଝିବନି, ତମେ ଯାଅ ।

ବ୍ରହ୍ମାନନ୍ଦ - ହୁଁ, ଜଗା ବୁଝିବ ? (ଯାଆନ୍ତି)

ଦାସିଆ - ତମେବି ଅଜବ ଗୋସାଇଁ, ହେ ପ୍ରଭୋ ଜଗନ୍ନାଥ । ତମରି ପାଇଁ ଏ ଜଗନ୍ନାଥ ପାଟଣା ରହିଛି - ତମ ହାତକୁ ଚାହିଁ ଭକ୍ତ ବସିଚି - ଧରିଲେ ଧର ସୁଦର୍ଶନ ନତୁବା ଦିଅ ଦରଶନ - (କିଛିକ୍ଷଣ ରହି) ଜଗା ଢଗା ତୁ କଣ ଏଯାଏ ଶୋଇନୁ ? ମୁଁ ଜାଣେ ଜଗା ପହୁଡ ପଡିଗଲେ ତୋତେ ନିଦ ହବନି ଏ ସଂସାରର କୀଟ ପତଙ୍ଗଠାରୁ ଠାରୁ ହାତୀ ମଣିଷ ପର୍ଯ୍ୟନ୍ତ ସମସ୍ତଙ୍କ ଦୁଃଖ ବୁଝିଲା ପରେ ଯାଇ ତୁ ଶୋଇବୁ ତଥାପି ମୁଁ ଗୀତ ବୋଲୁଛି ତୁ ଶୋଇଯା, ରାତି ପାହିଲେ ଉଠିବୁ ଜଗତ କଥା ବୁଝିବୁ - ଯା ଶୋଇଯା... (ଦାସିଆ ଗୀତ ଗାଏ - **ଜଗନ୍ନାଥ ହୋ କିଛି ମାଗୁନାହିଁ ତୋତେ....)**

(ଦାସିଆ ଭଜନ ଗାଏ, ଗାଉଁ ଗାଉଁ ନିଜେ ଶୋଇଯାଏ ବାମ ଅଂଚଳରେ ଆଲୋକ କମିଯାଇ ଗର୍ଭଗୃହର ଆଲୋକ ଜଳି ଉଠେ)

ବଳଭଦ - ଜଗା, ଏ ଜଗା, ଜଗନ୍ନାଥ ।

ସୁଭଦ୍ରା - କଣ ହେଲା ଭାଇ ?

ବଳଭଦ୍ର - ଦେଖ୍ ଏ ଜଗାଟାକୁ ଦେଖ୍ - ଭକ୍ତଟାର ଭଜନ ଶୁଣି ଘୁଙ୍ଗୁଡି ମାରିଲାଣି, ଅଥଚ ତା କଥା, ତା ସମସ୍ୟା ଆଡକୁ ଟିକିଏ ବି କାନ ଦେବାର ନାହିଁ ।

ସୁଭଦ୍ରା - ସାନଭାଇ ସେମିତି, ପେଟ ପୁରିଗଲେ ବାସ୍

ଜଗନ୍ନାଥ - (ନିଦଭାଙ୍ଗି) କଣ ହେଲା ଭାଇ, ସୁଭଦ୍ରା ?

ସୁଭଦ୍ରା - ବଡଭାଇ ଭୀଷଣ ରାଗିଗଲେଣି ।

ଜଗନ୍ନାଥ - କାହା ଉପରେ ? ମୋ ଉପରେ ? ମୋର ଅପରାଧ ?

ସୁଭଦ୍ର - ତମେ କଣ କଛି ଜାଣିନ ?

ଜଗନ୍ନାଥ - ନାଁ ତ କଣ ହୋଇଛି ଭାଇ

ବଳଭଦ୍ର - ତୁ କଣ କିଛି ଜାଣିନୁ ?

ଜଗନ୍ନାଥ - କେମିତି ଜାଣିବି ତମେ କଣ କିଛି କହିଛ ?

ବଳଭଦ୍ରା - ହଇରେ ସେ ପାଗଳଟା ଆଜିବି ସେମିତି ତୋ ନାଆଁ ଧରି ଉପାସରେ ଶୋଇପଡ଼ିଲା ।

ଜଗନ୍ନାଥ - ସେଟା ପାଗଳଟା ।

ବଳଭଦ୍ର - ପାଗଳ ?

ସୁଭଦ୍ରା - ସେ କଣ ମନକୁ ପାଗଳ ?

ବଳଭଦ୍ର - ତୋରି ନାଆଁରେ, ତୋରି ପାଇଁ ସେ ପାଗଳ ।

ସୁଭଦ୍ରା - ଭୋକ ଶୋଷ ଭୁଲି ତମ ନାମ ଭଜୁଛି ଅଥଚ ତମେ ତାକୁ ମୁଠେ ଖାଇବାକୁ ଦଉନ ?

ବଳଭଦ୍ର - ଜୀବନଯାକ ଯାହା ରୋଜଗାର କରିଥିଲା, ଘରେ ପିଲାଛୁଆଙ୍କୁ ଦେଇ ଆସିଲା ସେମାନେ ଆରାମରେ ଖାଇପିଅ ହେଣ୍ଡି ମାରିଲେ

ସୁଭଦ୍ରା - ଆଉ ବାକୀ ଜୀବନରେ ଯାହା ପାଇଲା ତମ ପାଦତଳେ ଅଜାଡ଼ିଦେଇ ନିରବରେ ଶୋଇଗଲା ।

ଜଗନ୍ନାଥ - ଓହ ! ହଉ ତାହାଲେ କଣ କରିବା, ଚାଲ ନହେଲେ ତାକୁ ଖୁଆଇ ଆସିବା

ବଳଭଦ୍ର - ହଁ, ସୁଭଦ୍ରା ଧର - ଥାଳୀ ଧର ।

ସୁଭଦ୍ରା - (ଥାଳିଧରି) ଚାଲ (ସମସ୍ତେ ଥାଳୀରେ ଖାଦ୍ୟ ସଂରଜାମ ଧରି ପହଞ୍ଚନ୍ତି ଦାସିଆକୁ ଦେଖନ୍ତି ।)

ଜଗନ୍ନାଥ - ଭକ୍ତ ମୋର ନିଶ୍ଚିନ୍ତରେ ଶୋଇ ପଡ଼ିଛି

ସୁଭଦ୍ରା - ବିଚରା ପେଟରେ ପେଟେ ଭୋକ, ଅଥଚ ଟିକିଏ ବି ଖାତିର ନାହିଁ ।

ବଳଭଦ୍ର - ଏ ଜଗନ୍ନାଥ ତା ନାଆଁଟାରେ ବି ମାୟା ଲଗେଇଛି କେଜାଣି, ମଣିଷ ଭୋକ ଶୋଷ ଭୁଲି ତାରି ପଛରେ ଦୌଡ଼ୁଛି ।

ଜଗନ୍ନାଥ - ଭାଇନା, ଏକଥା କଣ ଆଜି ? ଯୁଗ ଯୁଗ ଧରି ମଣିଷ ଏଇ ନାମ ପଛରେ ଦୌଡିଛି, କିଏ କଣ ପାଇଛି ନପାଇଛି ସେକଥା ସେ ହିଁ କେବଳ ଜାଣେ ।

ସୁଭଦ୍ରା - ହଉ ଏବେ କଣ କରିବା ?

ବଳଭଦ୍ର - ଡାକ, ଡାକ ତାକୁ - ଦାସିଆ ! ଏ ଦାସିଆ !

ଜଗନ୍ନାଥ - ନା ଥାଉ ଭାଇନା, ଭକ୍ତମୋର ଶାନ୍ତିରେ ଶୋଇଛି - ଶୋଇଥାଉ ।

ସୁଭଦ୍ରା - ଏମିତି ଉପବାସରେ ?

ବଳଭଦ୍ର - ନା !

ଜଗନ୍ନାଥ - ନା ତାକୁ ନିଦରେ ଖୁଆଇ ଦେବା ।

ସୁଭଦ୍ରା - କଣ ସ୍ୱପ୍ନରେ ?

ବଳଭଦ୍ର - ଠିକ ଅଛି

ଜଗନ୍ନାଥ - ଦାସିଆ ! ଉଠ ଦାସିଆ ! ଉଠ ! ଆଖି ଖୋଲ, ଦେଖ କିଏ ଆସିଛି, ମୁଁ ମୁଁ ତମ ଜଗା ଆସିଛି ଜଗା ।

(ଦାସିଆ ଉଠନ୍ତି, ଏମାନେ ଅଳିକରି ଦାସିଆଙ୍କୁ ଖୁଆନ୍ତି ଗୀତର ତାଳଭିତରେ ନାଚିନାଚି ଭକ୍ତକୁ ଭଗବାନ ଖୁଆନ୍ତି)

ଭକତରେ.. ଭକତ... ଭକତରେ.. ଭକତ...
ଭକତ ଡୋରୀରେ ବନ୍ଧା- ଜଗା ଆଉ ଜଗତ
ଭକତରେ.. ଭକତ...
ଉପାସେ ଶୋଇଲୁ ମୋ ନାମ ଧରି - ମୋ ଦେହ ସହିବ କହ କିପରି
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରି ତୋ ପାଇଁ ଆଣିଛି ଖିରି ଖେଚୁଡି
(ପହଣ୍ଡି ହୁଏ)
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରି ତୋ ପାଇଁ ଆଣିଛି ଖିରି ଖେଚୁଡି
ଖାଇ ଦେ ଖାଇଦେ ମୋ ପ୍ରିୟ ଭକତ
ଭକତରେ.. ଭକତ... ଭକତରେ.. ଭକତ...

ଭକତି ଡୋରୀରେ ବନ୍ଧା- ଜଗା ଆଉ ଜଗତ
ଭକତରେ.. ଭକତ...

(ଦାସିଆକୁ ଖୁଆଇ ପିଆଇ ତୃପ୍ତିରେ ହସନ୍ତି ଓ ତାକୁ ନେଇ ତା ମଣ୍ଡପରେ ଶୁଆଇ ତୃପ୍ତିରେ ହସନ୍ତି, ଦାସିଆ ଶୋଇପଡେ, ଏମାନେ ପୂର୍ବ ସ୍ଥାନକୁ ଯାଆନ୍ତି, ରାତି ପାହେ, ଦାସିଆର ନିଦ ଭାଙ୍ଗେ, ନିଦ ବାଉଳାରେ ଏତେ ତେଣେ ଦେଖନ୍ତି ଖୋଜନ୍ତି)

ଦାସିଆ - ଜଗା ! ଜଗନ୍ନାଥ ! କାହିଁ ଗଲୁ ଜଗନ୍ନାଥ (ଏହି ଖୋଜିବା ଭିତରେ ବ୍ରହ୍ମାନ୍ନା ଆସନ୍ତି ପୂଜାସଜ ଓ ଫୁଲ ଧରି)

ବ୍ରହ୍ମାନ୍ନା - କିରେ ଦାସିଆ ! ଏମିତି ବାଇଆ ପରି ହଉଛୁ କାହିଁକି ?

ଦାସିଆ - ମୁଁ ବାଇଆ ହେଇଯାଇଛି ଗୋସାଇଁ ।

ବ୍ରହ୍ମାନନ୍ଦ - ଖାଉନି କି ପିଉନୁ ତୁଛାଟାରେ ଜଗାଜଗା ଜପି ହଉଛୁ, ବାଇଆ ହବୁନି ?

ଦାସିଆ - କିଏ କହିଲା ମୁଁ ଖାଉନି, ସତ କହୁଛି ଗୋସାଇଁ କାଲି ରାତିରେ ନିଜେ ଜଗା ଭାଇ ଭଉଣୀକି ସଂଗରେ ଧରି ମୋ ପାଖକୁ ଆସିଥିଲା,ହାତରେ କେତେ ଭୋଗ, ମୋତେ ଖୁଆଇ ପିଆଇ ପୁଣି ଗୀତ ବୋଲି ଶୁଆଇ ଦେଇଗଲା ।

ବ୍ରହ୍ମାନନ୍ଦ - ହଁ ହେଇଥିବ, ତୁଟା ସତରେ ପାଗଳ

ଦାସିଆ - ଗୋସାଇଁ ତମେ ବି ମୋତେ ପାଗଳ କହିଲ ? ତମେ ବି ମୋତେ ବିଶ୍ୱାସ କରୁନ ? ମୁଁ ସତ କହୁଛି ଗୋସାଇଁ

ବ୍ରହ୍ମାନନ୍ଦ - ହଉ ହେଲା ହେଲା, ଯା ମୁହଁ ହାତ ଧୋଇଆ, ମୁଁ ଠାକୁରଙ୍କୁ ପ୍ରସାଦ ଅର୍ପଣ କରେ, ତାପରେ ଟିକିଏ ପ୍ରସାଦ ତୁଣ୍ଡରେ-

ଦାସିଆ - ଉଁ ହୁଁ ଆଗ ଢଗା ନାଁ ତୁଣ୍ଡରେ ଧରିବି ତାପରେ ଯାହା-

ବ୍ରହ୍ମାନନ୍ଦ - ହଉ ହେଲା ଯା

ଦାସିଆ - (ଯାଉ ଯାଉ ଫେରେ) ଗୋସେଇଁ, ମୋ ଢଗାକୁ ପେଟେ ଖୁଆଇ ସାରିଲା ପରେ ତା ଅଇଁଠା ଛଡା ଭୋଗ ମୋତେ ଦବ ।

ବ୍ରହ୍ମାନନ୍ଦ - ହଉ ବାବା ହେଲା, ତୁ ଗଲୁ (ଦାସିଆ ଯାଏ) ହେ ପ୍ରଭୋ ଜଗନ୍ନାଥ- ତୋତେ କି ମନ୍ତର ଜଣା କେଜାଣି, ସଂସାରିକୁ ବୈରାଗୀ କରୁଛୁତ ବୈରାଗୀକୁ ସଂସାର ବନ୍ଧନରେ ବାନ୍ଧି ଦଉଛୁ ତୋ ଲୀଳା ତୋତେ ଜଣା (ଅମର ଆସେ ହାତରେ କ୍ୟାମେରା)

ଅମର - ଆଜ୍ଞା ନମସ୍କାର

ବ୍ରହ୍ମାନନ୍ଦ - (ଆଶ୍ଚର୍ଯ୍ୟରେ ଚାହାନ୍ତି ) ଆପଣ ବୋଧହୁଏ ଏ ଅଂଚଳକୁ ନୂଆ ଆସିଛନ୍ତି ?

ଅମର - (ଆଶ୍ଚର୍ଯ୍ୟରେ) ନୂଆ ? ଅବଶ୍ୟ ମୁଁ ଆମେରିକାରେ ଥାଏ, ମୋ ଘର କିନ୍ତୁ କଟକରେ କିନ୍ତୁ ଆପଣ କେମିତି ଜାଣିଲେ ?

ବ୍ରହ୍ମାନନ୍ଦ - ଏଠାରେ ପୂଜକକୁ ପ୍ରଣାମ କରିବାର ପରଂପରା ନାହିଁ, ଏଠାରେ ସମସ୍ତ ପ୍ରଣାମ ସେହି ଜଗତର ନାଥ ଜଗନ୍ନାଥଙ୍କ ପାଦ ପଙ୍କଜରେ ଅର୍ପଣ କରାଯାଇଥାଏ ।

ଅମର - ମୋତେ କ୍ଷମା କରିଦେବେ, ମୁଁ ଜାଣେନି, ଆପଣ ବୋଧହୁଏ ଏ ମନ୍ଦିରର ପୂଜକ ?

ବ୍ରହ୍ମାନନ୍ଦ - ହଁ

ଅମର - ଏ ମନ୍ଦିର ଖୁବ୍ ପୁରାତନ ଜଣାପଡୁଛି ।

ବ୍ରହ୍ମାନନ୍ଦ - ହଁ, କିମ୍ବଦନ୍ତୀ କହେ ପୁରୀରେ ଭକ୍ତଙ୍କ ଅଳି ଅର୍ଦ୍ଦଳୀ ସବୁ ସହୁ ପ୍ରଭୁ ଯେତେବେଳେ ହାଲିଆ ହୋଇ ପଡନ୍ତି ସେତେବେଳେ ଅବସର ବିନୋଦନ ପାଇଁ ପ୍ରଭୁ ଅଖ୍ୟାତ ପଲ୍ଲୀରେ ଥିବା ଏଇ ମନ୍ଦିରକୁ ବିଜେ କରିଥାନ୍ତି ।

ଅମର - ଏ ଠାକୁରଙ୍କ ବେଶ ପରିପାଟୀ ଖୁବ୍ ସୁନ୍ଦର ।

ବ୍ରହ୍ମାନନ୍ଦ - ସିଏ ବିଧାଣି ସିଏ ଦେବତା, ଏ ସଂସାର ନିମିତ୍ତ ମାତ୍ର

ଅମର - ଏ ମୂର୍ତ୍ତି ଅନ୍ୟଠି ବିରଳ ।

ବ୍ରହ୍ମାନନ୍ଦ - କିଏ କହିଲା ଏ ମୂର୍ତ୍ତି ବିରଳ ବୋଲି ସେ ସବୁଠି ଅଛନ୍ତି, ତାଙ୍କୁ ଦେଖିବା ପାଇଁ ଆମର ଆଖିର ଅଭାବ ରହିଛି ।

ଅମର - ଏ ମୂର୍ତ୍ତିର ଗୋଟେ ଫଟୋ ନିଅନ୍ତି (କ୍ୟାମେରା ବାହାର କରନ୍ତି)

ବ୍ରହ୍ମାନନ୍ଦ - କଣ କହିଲ, ଫଟୋ ?

ଅମର - ହଁ, ମୋର କ୍ୟାମେରା ଅଛି ମାତ୍ର ଗୋଟେ ମିନିଟ୍‌ରେ

ବ୍ରହ୍ମାନନ୍ଦ - ନାଇଁ ଫଟୋ ଉଠେଇବ, ମୋ ଠାକୁର ଉପରେ ବିଜୁଳି ମାରିବ । ନାଇଁ ଫଟୋ ଉଠେଇ ପାରିବନି, ମୋ ଠାକୁର ଉପରେ ତମ ବିଜୁଳୀ ଝଲକ ଛୁଇଁ ପାରିବ ନାହିଁ, ତମେ ଆସ ଭଜନକର, ଜଣାଣ କର, ଯାହା ମାଗୁଛ ମାଗ, ଯାହା କହୁଛ କୁହ ଏଇଠି ଏଇ ମନ୍ଦିର ବେଢ଼ାରେ କୁହ, ଠାକୁରଙ୍କୁ ଫଟୋରେ ନେଇ ତମ ଘରେ ଲଗାଅନି ।

ଅମର - ମୋର ମାତ୍ର ଗୋଟିଏ ଫଟୋ ଲୋଡା, ସେଥିପାଇଁ ଆପଣ ଯାହା ମାଗିବେ -

ବ୍ରହ୍ମାନନ୍ଦ - ନାଁ ଠାକୁରଙ୍କ ଫଟୋ ବିକିବା ପରଂପରା ଆମର ନାହିଁ ।

ଅମର - ଠିକ୍ ଅଛି ଆପଣ ନନିଅନ୍ତୁ, ମୁଁ ଏ ମନ୍ଦିରକୁ ପକ୍କା କରିଦେବି, ଠାକୁରଙ୍କୁ ରୂପାର ମୁକୁଟ ଦେବି ।

ବ୍ରହ୍ମାନନ୍ଦ - ମନା କଲିନା, ତମେ ଏବେ ଆସିପାର, ମଣୋହୀ ଉଚ୍ଛୁର ହେଉଛି (ଭିତରକୁ ଚାଲିଯାଆନ୍ତେ)

ଅମର - ଆଶ୍ଚର୍ଯ୍ୟ ଏ ସମୟ ରେ ପୁଣି ଏତେ ନିଷ୍ଠାବାନ୍ ମଣିଷ, କିନ୍ତୁ ଏ ଯୋଉ ମୂର୍ତ୍ତି ରହଛି, ୟାର ଫଟୋଟେ ନେଲେ... ଅନେକ କିଛି କରି ହୁଅନ୍ତା । ହେଲେ.... ତଥାପି ଦେଖିବା (ଫେରି ପଡନ୍ତି ସାମ୍ନାରୁ ଆସନ୍ତି ପୁରୁଷୋତ୍ତମ ଓ ପଦ୍ମା ଡରି ଡରି ଏମାନଙ୍କୁ ଲକ୍ଷ୍ୟ କରିକରି ଲୁଚି ଯାଆନ୍ତି ଅମର)

ପଦ୍ମା - ମୋତେ କେମିତି ଡର ଲାଗୁଛି

ପୁରୁଷୋ - ଡରିବାର କିଛି ନାହିଁ, ମୋ ବାପା ତମ ବାପାଙ୍କର ଭଳି ନିଷ୍ଠୁର ନୁହଁନ୍ତି

ପଦ୍ମା - ନିଷ୍ଠୁର ନହୋଇ ପାରନ୍ତି ରକ୍ଷଣଶୀଳତ ଆମର ପଦକ୍ଷେପକୁ ସେ କଣ ସହଜରେ ସ୍ୱୀକୃତି ଦେଇଦେବେ ।

ପୁରୁଷୋ - କଷ୍ଟରେ ତ ଦେବେ, ଆଉ ପ୍ରେମ ପାଇଁ କଷ୍ଟ କରିବାଟାତ ନୂଆ ନୁହେଁ

ପଦ୍ମା - ତମର ମାଆ ଥିଲେ ହୁଏତ -

ପୁରୁଷୋ - ତମର ତ ମାଆ ଅଛନ୍ତି କଣଟା କରିପକେଇଲେ ?

(ଏହି ସମୟରେ ମନ୍ଦିର ଭିତରୁ ଘଣ୍ଟି ଶବ୍ଦ ଶୁଭେ ଏମାନଙ୍କ କଥା ଶୁଣାଯାଏ ନାହିଁ, ଘଣ୍ଟା ବନ୍ଦହୁଏ)

ପୁରୁଷୋ - ପୂଜା ସରିଲା, ଏବେ ବାପା ବାହାରିବେ-

ପଦ୍ମା - ବାପା ବାହାରିବେ, ମୋ ଦେହ କେମିତି ଥରୁଛି

ପୁରୁଷୋ - ଓଃ ରୁହ (ବ୍ରହ୍ମାନ୍ନା ମନ୍ତ୍ର ପଢ଼ି ପଢ଼ି ବାହାରନ୍ତି ଏ ଦୁହେଁ ପ୍ରଣାମ କରନ୍ତି)

ବ୍ରହ୍ମାନନ୍ଦ - କିଏ ? ପୁରୁଷୋତ୍ତମ, ତୋତେ ବି କଣ ଏ ମନ୍ଦିରର ପରଂପରା ବିଷୟରେ ସଚେତନ କରେଇ ଦେବାକୁ ପଡିବ ?

ପୁରୁଷୋ - ମୁଁ ଗୋଟେ ଭୁଲ୍...

ବ୍ରହ୍ମାନନ୍ଦ - ତୁ ଭୁଲ୍ କରିଛୁ, (ପଦ୍ମାକୁ ଦେଖନ୍ତି) ଇଏ... ? ତମେ କିଏ ମାଆ !

ପୁରୁଷୋ - ଇଏ ପଦ୍ମା, ପଦ୍ମାବତୀ ।

ବ୍ରହ୍ମାନନ୍ଦ - (ଚମକି ପଡି) ପଦ୍ମାବତୀ .... ପୁରୁଷୋତ୍ତମ ସହିତ... ?

ପୁରୁଷୋ - ହଁ ଆମେ ପରସ୍ପରକୁ ଭଲପାଉ

ବ୍ରହ୍ମାନନ୍ଦ - ଭ...ଲ...ପା...ଅ... (ନିଜକୁ ସମ୍ଭାଳି ନେଇ) ଭଲକଥା ହେଲେ....ଏମିତି ?

ପୁରୁଷୋ - ତାଙ୍କ ବାପା ରାଜି ନୁହଁନ୍ତି

ବ୍ରହ୍ମାନନ୍ଦ - ବାପା ରାଜି ନୁହଁନ୍ତି ? ତାମାନେ... ତେଣୁ ତୁମେ ପଳେଇ ଆସିଛ ?

ପଦ୍ମା - ଆଉ କିଛି....

ବ୍ରହ୍ମାନନ୍ଦ - କରିବାର ନଥିଲା, ହଇରେ ତୁ ପୁରୁଷୋତ୍ତମ ଆଉ ତମେ ପଦ୍ମାବତୀ ଏଇ ଓଡିଶା, ଜଗନ୍ନାଥ ଦେଶର ଲୋକ, ପଦ୍ମାବତୀଙ୍କୁ ପାଇବା ପାଇଁ ଗଜପତି ପୁରୁଷୋତ୍ତମ ଦେବ ଦୁଇ ଦୁଇଟା ଯୁଦ୍ଧ କଲେ, କାଞ୍ଚିରାଜାଙ୍କୁ ପରାସ୍ତକରି ପଦ୍ମାବତୀଙ୍କୁ ବିବାହ କଲେ ଜଗନ୍ନାଥଙ୍କ ଶରଣାପନ୍ନ ହୋଇ ଯୁଦ୍ଧ ଜିତିଲେ, ଆଉ ତୁ ରାଜ୍ୟତ ଜୟ କରିବା ପଛକଥା ପଦ୍ମାବତୀଙ୍କ ବାପାଙ୍କ ହୃଦୟଟାକୁ ଜିତିପାରିଲୁନି ? ଶେଷରେ ଏମିତି ଚୋରଙ୍କ ଭଳି ଜଣେ ବାପର କନ୍ୟାକୁ ଚୋରି କରି ଆଣିଲୁ ? ବ୍ରହ୍ମାନନ୍ଦ ପଣ୍ଡାର ପୁଅ କାପୁରୁଷର ପରିଚୟ ଦେଲୁ ? ଯା ଯେମିତି ଆଣିଛୁ ସେମିତି ତା ବାପାଙ୍କ ପାଦତଳେ କ୍ଷମା ମାଗି ତାଙ୍କ ଝିଅକୁ ଫେରେଇ ଦେଇ ଆ

ପଦ୍ମା - ନାଇଁ ବାପା ମୋ ବାପା ଭୀଷଣ ରାଗି ଆମେ ଫେରିଗଲେ ସେ ଆହୁରି ରାଗିଯିବେ,କଣ ନାଇଁ କଣ କରିଦେବେ ।

ବ୍ରହ୍ମାନନ୍ଦ - ଯାହା କଲେ ବି ତୁମକୁ ସହିବାକୁ ପଡିବ, ତୁମ ଭୁଲପାଇଁ ତୁମକୁ ଦଣ୍ଡ ଭୋଗିବାକୁ ପଡିବ ଯାଅ ତାଙ୍କ ସ୍ୱୀକୃତି ବିନା ମୁଁ ତୁମକୁ ଗ୍ରହଣ କରିପାରିବିନି ।

ପୁରୁଷୋ - ଆମର ଭୁଲ୍ ହୋଇଛି ବାପା !

ପଦ୍ମା - ଆମକୁ କ୍ଷମା କରିଦିଅନ୍ତୁ ।

ବ୍ରହ୍ମାନନ୍ଦ - ଠିକ୍ ଅଛି, ମୁଁ ତୁମକୁ ବୋହୂ ଭାବରେ ଗ୍ରହଣ କରିବି କିନ୍ତୁ ଏମିତି ନୁହେଁ ବେଦୀ ଉପରେ ଅଗ୍ନିକୁ ସାକ୍ଷୀ ରଖି ତମ ବାପା କନ୍ୟାଦାନ କରିବେ ଆଉ ମୋ ପୁଅ ଢୋଲପିଟି ତମଘରୁ ତମକୁ ଆଣିବ, ଏମିତି ଚୋରପରି ତମେ ଆସି ଆମ ଗୋତ୍ରରେ ସାମିଲ ହୋଇପାରିବନି, ଆଉ ସେ ଦାୟିତ୍ୱ ମୋର । ପୁରୁଷୋତ୍ତମ ତୁ ମନ୍ଦିରର ଯାବତୀୟ କାର୍ଯ୍ୟ ସାରି ଘରକୁ ଯା ମୁଁ ପଦ୍ମାବତୀଙ୍କୁ ନେଇ ତା ବାପାଙ୍କୁ ସାକ୍ଷାତ କରୁଛି ।

ପୁରୁଷୋ - ତମେ... ନା ବାପା ତମେ ଗଲେ ।

ବ୍ରହ୍ମାନନ୍ଦ - ଆରେ ମୁଁ ପରା ବାପା, ପୁଅ ଚାନ୍ଦ ଧରିବାକୁ ଅଳିକଲେ ମାଆ ସିନା ଆଣିଦିଏ ଆଉ ତୋରତ ମାଆ ନାହିଁ ମୁଁ ତୋର ବାପା ମାଆ ସବୁ କିଛି, ତୋ ଖୁସିପାଇଁ ମୁଁ ଏତିକି କରି ପାରିବିନି ? ଆସ ପଦ୍ମା (ଯାଆନ୍ତି ପଦ୍ମା ଓ ବ୍ରହ୍ମାନ୍ନା)

(ପୁରୁଷୋତ୍ତମ ଚାହିଁ ରହିଥାନ୍ତି ତାଙ୍କୁ ଲକ୍ଷ୍ୟକରି, ଆସନ୍ତି ଅମର)

ଅମର - ବାସ୍ତବିକ୍ ଆପଣଙ୍କ ବାପାଙ୍କର ତୁଳନା ନାହିଁ

ପୁରୁଷୋ - ଆପଣ...

ଅମର - ମୁଁ ଏମିତି ଜଣେ ଭକ୍ତ, ଆଛା ଆପଣ କଣ ଏ ପୂଜକଙ୍କର ଏକମାତ୍ର ପୁତ୍ର ?

ପୁରୁଷୋ - ହଁ

ଅମର - ଆପଣଙ୍କରତ ଏବେ ବାହାଘର ହୋଇଯିବ, ହେଲେ, ଗୋଟେ

ପୁରୁଷୋ - କଣ ହେଲା ?

ଅମର - ଆପଣ ଏ ବୟସରେ ....ଏମିତି ପୋଷାକରେ...ନା ଶୋଭା ଦିଶୁନି । ଆପଣଙ୍କର ଯୋଉ ଚେହେରା ମାନେ ରାଜା ଚେହେରା...ପୁଣି ଯେମିତି ପସନ୍ଦ କରିଛନ୍ତି....ସେଥିପାଇଁ ରୀତିମତ ଷ୍ଟାଇଲ୍ ଦରକାର

ପୁରୁଷୋ - ଆପଣଙ୍କ କଥା ମୁଁ କିଛି ବୁଝିପାରୁନି

ଅମର - ଆପଣ କଣ ଭବିଷ୍ୟତରେ ଏ ପୂଜାକୁ ପ୍ରଫେସନ୍ କରିବେ,

ପୁରୁଷୋ - ନିଶ୍ଚୟ, ବାପାଙ୍କ ପରେ ଏ ମନ୍ଦିର ଦାୟିତ୍ୱ ବୁଝିବାକୁ ମୋ ଛଡା ଆଉ କିଏ ଅଛି ?

ଅମର - ଆହା ସେଇଟା ଆପଣଙ୍କର ଦୁର୍ଭାଗ୍ୟ, ଆପଣ ଯଦି ଥରେ ଏ ବାହାର ଦୁନିଆଟାକୁ ନିକଟରୁ ଦେଖି ନିଅନ୍ତେ ତାହାଲେ ଏ ସୁନ୍ଦର ଭବିଷ୍ୟତଟା କୁ ଏମିତି ଏ ମନ୍ଦିରଟା ଭିତରେ ଘଣ୍ଟାପିଟି କଟେଇ ଦିଅନ୍ତେନି ।

ପୁରୁଷୋ - ସେଇଟା ତ ଆମ କୁଳ ବେଉସା ।

ଅମର - ମୁଁ ମନା କରୁନି, ଆପଣ ଆପଣଙ୍କ କୁଳ ବେଉସା କରନ୍ତୁ, ତ ବୋଲି... ସମୟକୁ ଦେଖି ସେଥିରେ କିଛି ନୂଆ - ତଥା ସ୍ୱତନ୍ତ୍ରତା ରଖିବା ଆବଶ୍ୟକତା ।

ପୁରୁଷୋ - ଆପଣ କଣ କହିବାକୁ ଚାହାନ୍ତି...

ଅମର - ଏଇ ମୋତେ ଦେଖନ୍ତୁ, ମୁଁ କେମିତି ଡ୍ରେସ୍ ପିନ୍ଧିଛି, ଗାଡି ଚଢୁଛି, ଆକାଶରେ ଉଡୁଛି, ମନଇଛା ମାର୍କେଟିଂ କରୁଛି, ଆପଣଙ୍କର ମନ ହଉନି ?

ପୁରୁଷୋ - ମନ ହେଲେବି ଏତେ କଥାକୁ ଅର୍ଥ କାହିଁ ?

ଅମର - ଅର୍ଥ, ଅର୍ଥତ ପବନରେ ଉଡୁଛି, ଖାଲି ଧରି ପାରିଲେ ହେଲା ।

ପୁରୁଷୋ - ଅର୍ଥ ଉଡୁଛି ?

ଅମର - ଦେଖି ନପାରିଲେ, ଯଦି ଚାହିଁବେ ମୁଁ ଦେଖେଇ ଦେବି ଧରେଇ ଦେବି ।

ପୁରୁଷୋ - ଆପଣ ମୋତେ ଦେଖାଇଦେବେ ଧରେଇ ଦେବେ, ମୁଁ ଧରି ପାରିବିତ ?

ଅମର - (ହସି) ଆସନ୍ତୁ... (ଟାଣି ନିଅନ୍ତି ଆଡୁଆଳକୁ)

(ଗର୍ଭଗୃହ ଆଲୋକିତ ହୁଏ)

କୋଠ ଭୋଗଖିଆ ମୋ ଚକା ଆଖିଆ-
ଉଠ ହେ ପହଡ ଭାଙ୍ଗି..... ପଣ୍ଡା ପଡିହାରୀ
କରନ୍ତି ଗୁହାରୀ ହେବାକୁ ଚନ୍ଦନ ଲାଗି...

ଜଗନ୍ନାଥ - (ଖୁସି ମନରେ ନଡ଼ିଆ କୋରା ଖାଉଥାଆନ୍ତି)

ସୁଭଦ୍ରା - (ନିଦ୍ରା ଭାଙ୍ଗି) ଭାଇ (ଖାଉଥିବାର ଦେଖି ହସନ୍ତି)

ବଳଭଦ୍ର - (ନିଦ୍ରାଭାଙ୍ଗି) ଆରେ ! ସତରେ ଜଗନ୍ନାଥ ଏ ଦୁନିଆ ତୁଚ୍ଛାଟାରେ ତୋତେ ପେଟୁ ବୋଲି କହେନି, ଖାଇବା ପାଖରେ ତୋର ଲଜ୍ଜା ହେଲେ ଟିକିଏ ବି ନଥାଏ ।

ଜଗନ୍ନାଥ - ଧନଧାନ୍ୟଂ ପ୍ରୟୋଗେଷୁ ବିଦ୍ୟାସଂଗ୍ରଣେଷୁଚ
ଆହାରେ ବ୍ୟବହାରେଷୁ ତ୍ୟକ୍ତ ଲଜ୍ଜା ସୁଖୀ ଭବେତ୍

ସୁଭଦ୍ରା - ଖାଇବା ସପକ୍ଷରେ ଭାଇନା ଏବେ ଢେର ଶ୍ଳୋକ କହିବେ

ବଳଭଦ୍ର - ଆରେ ଯେତିକି ଖାଇଲୁ ସେତିକି ଥାଉ, ନହେଲେ ଏବେ ସେ ଦାସିଆ ପାଗଳା ଏବେ ଗାଧୋଇ ପାଧୋଇ ଆସିବ ଯେ କିଛି ନପାଇଲେ ଠେଙ୍ଗା କଚାଡି ଦେବ ।

ଜଗନ୍ନାଥ - ଭାଇନା ତମେତ ଜାଣ ଭକ୍ତଙ୍କ ଗାଳି ନଶୁଣିଲେ ମୋତେ ନିଦ ଆସେନି ଭକ୍ତଙ୍କ ମାଡ ନଖାଇଲେ ମୋର ହଜମ ହୁଏନି ଆଉ ଦାସିଆ, ତା ମାଡ ତ ନିଆରା, ମୋରି ପାଇଁ ବିଚରା ଘର ସଂସାର ସବୁ ତୁଚ୍ଛ କରି ଦେଇଛି ।

ବଳଭଦ୍ର - ଆଉ ତୁ, ତାକୁ ଯେମିତି ସ୍ୱର୍ଗସୁଖ ଅଜାଡି ଦେଇଛୁ ।

ଜଗନ୍ନାଥ - ମୋତେ ଖୋଜିବାରେ ମୋତେ ଡାକିବାରେ ଭକ୍ତ ସ୍ୱର୍ଗ ସୁଖ ପାଏ ଭାଇନା ।

ସୁଭଦ୍ରା - ଆଉ ଭକ୍ତଙ୍କୁ ଦୁଃଖ ଦେବାରେ ତମର ସ୍ୱର୍ଗସୁଖ ଥାଏ ।

ଜଗନ୍ନାଥ - ସୁଭଦ୍ରା ତୁ ତ ଏଇ ମାଟିର ବଂଧୁ ମହାନ୍ତିଙ୍କୁ ଦେଖିଲୁ କୁଳକୁଟୁମ୍ବ ଧରି ଅଖିଆ ଅପିଆ ବେତମାଡ ଖାଇ ପେଜନଳା ପାଖରେ ପଡି ରହିଲା ।

ସୁଭଦ୍ରା - ତାପରେ ଯାଇ ଭାଇନାଙ୍କ ଦୟା ହେଲା ।

ବଳଭଦ୍ର - ଦୟା କଣ କହୁଛୁ ସକାଳେ ଚୋର ବୋଲି ଧରାପଡ଼ି ମିଛଟାରେ ମାଡ ଖାଇଲା ।

ଜଗନ୍ନାଥ - ତମର ଦାସିଆ ବାଉରୀ କଥା କଣ ମନେପଡୁନି ?

ସୁଭଦ୍ରା - କାହିଁକି ସାଲବେଗ

ବଳଭଦ୍ର - ଆରେ ଓଡିଶାରେ ଜଗନ୍ନାଥ ଭକ୍ତଙ୍କର କଣ ଅଭାବ ଅଛି ?

ଜଗନ୍ନାଥ - ବାସ୍ତବରେ ଏ ଓଡିଶାର ମାଟି ପାଣି ପବନରେ ମୋ ଭକ୍ତଙ୍କ ଭିଡ

ସୁଭଦ୍ରା - ଭକ୍ତ ପାଇଁ ପରା ତମେ ଦୁଇଭାଇ ମୋତେ ଛାଡ଼ି କଳାଧଳା ଘୋଡାରେ ଚଢ଼ି କାଞ୍ଚି ଚାଲିଗଲ ।

ବଳଭଦ୍ର - ପୁରୁଷୋତ୍ତମ ଦେବଙ୍କ ପାଇଁ ଆମେ ଖଣ୍ଡାଧରି ଯୁଦ୍ଧକଲୁ ।
ଜଗନ୍ନାଥ - ମାଣିକ ପାଖରେ ମୁଦି ବନ୍ଧା ଦେଇ ଆମେ ଦହି ପିଇଲୁ ।
ସୁଭଦ୍ରା - ଶେଷରେ ପଦ୍ମାବତୀ ଆସି ଚଣ୍ଡାଳର ପାଣି ଗ୍ରହଣ କଲା
ବଳଭଦ୍ର - ଖାଲି ଓଡିଆ ଗାଉଛିନା ଜଗନ୍ନାଥ ତମେ ବଡ ଛଳିଆ
ସୁଭଦ୍ରା - ଭକତ ଜନଙ୍କ ଗଳାମାଳିଆ
ଜଗନ୍ନାଥ - (ହସି ଉଠିଲେ, ଅନ୍ୟମାନେ ବି ହସନ୍ତି ହଠାତ୍ ଜଗନ୍ନାଥ ଗମ୍ଭୀର ହେଲେ)
ସୁଭଦ୍ରା ଓ ବଳଭଦ୍ର - କଣ ହେଲା ?
ଜଗନ୍ନାଥ - ପୁରୁଷୋତ୍ତମ ଦେବ ଆସୁଛନ୍ତି
ସୁଭଦ୍ରା - ପୁରୁଷୋତ୍ତମ ଦେବ ?
ବଳଭଦ୍ର - କରେ ପାଗଳା ହେଲୁ କି ?
ଜଗନ୍ନାଥ - ନାଇଁ ଭାଇନା ଓଡିଆ ଜାତିଟା ଏବେ ପାଗଳ ହେବାକୁ ଯାଉଛି ।
ସୁଭଦ୍ରା - ଓଡିଆ ଜାତି...
ବଳଭଦ୍ର - ପାଗଳ ହେବ କାହିଁକି ?
ଜଗନ୍ନାଥ - ଦେଖ - (ଇସାରାରେ ସମସ୍ତେ ସ୍ଥିର)
(ପୁରୁଷୋତ୍ତମ କହିକହି ଆସନ୍ତି ଅମର ସହିତ)
ପୁରୁଷୋ - ଗୋଟେ କାହିଁକି, ଶହେଟା ଫଟୋ ନିଅ, କିଏ ମନା କରୁଛି, ଫୋଟୋ ଉଠେଇବା ଗୋଟେ ଫେସନ୍ , ଝିଅ ବୋହୂଙ୍କ ଫଟୋ ନେଲେ ସିନା ତାଙ୍କ ଇଜ୍ଜତ ଚାଲିଯିବାର ଭୟଥାଏ ଇଏତ ଠାକୁରଙ୍କ ଫଟୋ ଏ ଠାକୁରଙ୍କୁ ଆମେ ଗଢ଼ିଛୁ ଆମେ ରଖିଛୁ ତାଙ୍କ ଫଟୋ ଉଠେଇଲେ ତାଙ୍କରି ଗୌରବ ବଢ଼ିବ, ତାଙ୍କୁ ପାଞ୍ଚଲୋକ ଜାଣିବେ, ଆଉ ଜାଣିଲେ ସିନା ପୂଜା କରିବେ, ଉଠାଅ ଉଠାଅ ଯେତେ ପାରୁଛ ଉଠାଅ ।
ଅମର - ଆପଣ ସିନା ବୁଝି ପାରିଲେ ହେଲେ ଆପଣଙ୍କ ବାପାତ...
ପୁରୁଷୋ - ଓହୋ ସେ ହେଲେ ପୁରୁଣାକାଳିଆ ଲୋକ ସେ ଏ ଆଧୁନିକ ଫଟୋ ବିଷୟରେ କଣ ବୁଝିବେ, ଉଠାଅ (ଅମର ଫଟୋ ଉଠାନ୍ତି ବିଭିନ୍ନ ଦିଗରୁ ବିଭିନ୍ନ କୋଣରୁ)

ଦାସିଆ - (ବାହାରୁ) - ଜଗା ଏ ଜଗା ମୋତେ ଭୀଷଣ ଭୋକ, ମୋ ପେଟ ଜଳିଲାଣି, ଦେ ଯାହା ଦଉଛୁ ଦେ ।

ପୁରୁଷୋ - ଏଁ ଦାସିଆ କକେଇ ! ଆଜ୍ଞା ସେତିକି ଥାଉ ଦାସିଆ ପାଗଳା ଆସିଗଲା ଏବେ ମୁଣ୍ଡ ଫଟେଇଦେବ ।

ଅମର - ଦାସିଆ ପାଗଳା

ପୁରୁଷୋ - ହଁ ସେ ଜଗନ୍ନାଥ ପାଗଳ

ଦାସିଆ - (ବାହାରୁ) ଜଗା ଏ ଜଗା

ପୁରୁଷୋ - ଏଇ ଆସିଗଲା

ଅମର - ମୋର ଅବଶ୍ୟ କାମ ପ୍ରାୟ ସରିଯାଇଛି ।

ପୁରୁଷୋ - ଆସନ୍ତୁ ନା ଏଇ ପଛପଟ ଦେଇ ପଳାଇବା (ତରିତରି ପଳାନ୍ତି, ଦାସିଆ ଆସେ)

ଦାସିଆ - ଦେ ଦେ ଜଗା ମୋତେ ଖାଇବାକୁ ଦେ- ଆଣିଥିବା କଦଳୀ ପତ୍ରଟେ ପକେଇ ବସିଯାଏ - ଭକତରେ.. ଭକତ... ଭକତରେ.. ଭକତ... ଅଂଧାର)



## ଦ୍ୱିତୀୟ ଦୃଶ୍ୟ

(ଦକ୍ଷିଣ ଅଂଚଳ, ବ୍ରହ୍ମାନାଙ୍କ ଘର ସମ୍ମୁଖ, ସମୟ ସଂଧ୍ୟା ଆଗତ। ଆଲୋକ ଆସିଲା ବେଳକୁ ଦେଖାଯାଏ ପଦ୍ମା ବୋହୂ ବେଶରେ ସଂଧ୍ୟା ଦୀପ ଧରି ଘରୁ ବାହାରନ୍ତି ବାହାରୁ ପୁରୁଷୋତ୍ତମ ଆସନ୍ତି, ସାମ୍ନାରେ ସାକ୍ଷାତ ହୁଏ।)

ପଦ୍ମା - କଣ ହେଲା, ତଥାପି ଏ ବେଶ ବଦଳିଲାନି ?

ପୁରୁଷୋ - ବଦଳିବ, ଏତେ ବ୍ୟସ୍ତ ହେଲେ ହେବ, ଆସ୍ତେଆସ୍ତେ ସବୁ ବଦଳିଯିବ।

ପଦ୍ମା - ଦେଖ ଏମିତି ଧୋତି ପିନ୍ଧି ଆମ ଘରକୁ କେବେ ଯିବନି।

ପୁରୁଷୋ - ନାଇଁ ବାବା ନାଇଁ।

ପଦ୍ମା - ବାପାତ ଯାହା କହିବେ, ବୋଉ ଭାଇନା ଏମାନେ ତୁମକୁ ପାଖରେ ବି ବସେଇବେନି (ଏହି ସମୟରେ ଅମର ଆସନ୍ତି)

ଅମର - ନମସ୍କାର ପଣ୍ଡା ବାବୁ (ପଦ୍ମା ଯାଏ)

ପୁରୁଷୋ - ହଁ ନମସ୍କାର, ଆରେ ଆପଣ ?

ଅମର - ଚିହ୍ନି ପାରିଲେ ତାହାଲେ ?

ପୁରୁଷୋ - ଇଏ କି କଥା, ଆପଣଙ୍କୁ ଫେରେ ଚିହ୍ନିବିନି ?

ଅମର - ମୋର ଆସିବା ଅବଶ୍ୟ ଟିକିଏ ଡେରି ହୋଇଗଲା, ଆଉ ସବୁ ଭଲ ?

ପୁରୁଷୋ - ଯା ଭିତରେ ମୋର ବିବାହ ସରିଯାଇଛି ।

ଅମର - ଏଁ ! ସତେ; କଂଗ୍ରାଚୁଲେସନ୍ ପଣ୍ଡାବାବୁ ।

ପୁରୁଷୋ - ପ. ଣ୍ଡା. ବା. ବୁ. ଆପଣଙ୍କ ମୁହଁରୁ ପଣ୍ଡାବାବୁ ବୋଲି ଶୁଣିନେଲେ ମୁଁ ଧନ୍ୟ ହୋଇଯାଏ

ଅମର - ମାନେ ?

ପୁରୁଷୋ - ଏଠି ମୋତେ 'ଗୋସାଇଁ', 'ନନା', 'ଠାକୁରେ' ଛଡା 'ବାବୁ' ବୋଲି କେହି ଡାକନ୍ତିନି ।

ଅମର - ଆପଣଙ୍କୁ ତେବେ ବାବୁ ଶୁଣିବାକୁ ଭଲଲାଗେ ?

ପୁରୁଷୋ - ଆଉ, ଥରେ ବାବୁ ବୋଲି ଶୁଣିନେଲେ ମୋ ଛାତିଟା ଯେମିତି ଆଉ ଦୁଇଫୁଟ ବଢ଼ିଯାଏ ।

ଅମର - ତାହାହେଲେ ଆପଣଙ୍କୁ ଯେ କେବଳ ବାବୁ ଡାକିବି ତା ନୁହେଁ ଆପଣଙ୍କୁ ଏକଦମ୍ ବାବୁ ବନେଇ ଦେବି ।

ପୁରୁଷୋ - ଆପଣଙ୍କ ଇଚ୍ଛା ।

ଅମର - ଇଚ୍ଛା ମୋର ନୁହେଁ ଜଗନ୍ନାଥଙ୍କର

ପୁରୁଷୋ - ଜଗନ୍ନାଥଙ୍କର ?

ଅମର - ବାସ୍ତବିକ୍ ଆପଣଙ୍କର ଜଗନ୍ନାଥଙ୍କର ଗୋଟେ ସ୍ପେଶାଲ ପାୱାର ଅଛି ।

ପୁରୁଷୋ - କଣ କହିଲେ ସ୍ପେଶାଲ ପାୱାର, ପୁଣି ଜଗନ୍ନାଥଙ୍କର ?

ଅମର - ହଁ ମାତ୍ର ତିନିଟା ମାସ ଭିତରେ ମୁଁ କୋଟିପତି ହୋଇପାରିଛି ।

ପୁରୁଷୋ - କୋ...ଟି...ପ....ତି ? କିପରି ?

ଅମର - ଆପଣଙ୍କ ଜଗନ୍ନାଥଙ୍କର ଯୋଉ ଫଟୋ ନେଇଥିଲି ସେହି ଫଟୋର ଏତେ କରାମତି ।

ପୁରୁଷୋ - ମୁଁ ଏସବୁ କିଛି ବୁଝିପାରୁନି ।

ଅମର - ଜଗନ୍ନାଥଙ୍କ ଚକା ଆଖିର ଫଟୋରେ ବିଜିନେସ୍ କରି ମୁଁ ବେଶ୍ ଧନୀ ହୋଇଯାଇଛି ।

ପୁରୁଷୋ - ସତେ ? ଆମ କାଳିଆର ଏତେ ମହିମା

ଅମର - ଏଇ ଦେଖନ୍ତୁ ଜଗନ୍ନାଥ ମିଲ୍ସ୍‌ର କପଡାରେ ତିଆରି ପେଣ୍ଟ
ପୁରୁଷୋ - ପେଣ୍ଟ ?
ଅମର - ନିଅନ୍ତୁ ପିନ୍ଧନ୍ତୁ, ପିନ୍ଧନ୍ତୁ ଆପଣଙ୍କ ପାଇଁ ଆଣିଛି
ପୁରୁଷୋ - ମୋ ପାଇଁ
ଅମର - ତା ସାଙ୍ଗକୁ ଏଇ ଜଗନ୍ନାଥ ସାର୍ଟିଂର ସୁନ୍ଦର ସାର୍ଟ, ପିନ୍ଧନ୍ତୁ
ପୁରୁଷୋ - ସାର୍ଟ (ପୁରୁଷୋତ୍ତମ ପିନ୍ଧିବାକୁ ନେଇ ଭିତରକୁ ଦୌଡନ୍ତି) (ପଦ୍ମା ପହଞ୍ଚନ୍ତି, ଅମର ଦେଖେ ପଦ୍ମାକୁ )
ଅମର - ଆରେ ମ୍ୟାଡାମ୍ ଆପଣ... ଭାବୁଛନ୍ତିକି ମୁଁ ଆପଣଙ୍କୁ ଭୁଲିଯାଇଛି ବୋଲି ? ନାଁ ନା ଆପଙ୍କର ଯୋଉ ପର୍ସନାଲଟି ଏ ଶାଢ଼ୀରେ କଣ ଶୋଭାପାଉଛି ସେଥିପାଇଁ ଆପଣଙ୍କୁ ମୋର ଏ ସୁଭଦ୍ରା ଟେକ୍ସଟାଇଲ୍ସର ଡ୍ରେସ୍ (ଦିଅନ୍ତି)
ପଦ୍ମା - (ଦେଖି ଖୁବ ଖୁସୀରେ) ଇସ୍ ! କେତେ ସୁନ୍ଦର ହୋଇଛି ଏ ଡ୍ରେସ୍
ଅମର - ଆପଣ ପିନ୍ଧିଲେ ଆପଣଙ୍କୁ ବଢ଼ିଆ ମାନିବ (ଆସନ୍ତି ପୁରୁଷୋତ୍ତମ ସାର୍ଟ ପେଣ୍ଟ୍ ପିନ୍ଧି ଭିତରୁ ଆସନ୍ତି, ପଦ୍ମା ଭିତରକୁ ଯିବାବେଳେ ପରସ୍ପରକୁ ଦେଖନ୍ତି) (ଯାଆନ୍ତି ପଦ୍ମା)
ଅମର - ଆ ଃ କି ମ୍ୟାଚିଂ ? ଏଥର ଆପଣଙ୍କୁ ବାବୁ ନକହି କିଏ ଗୋସାଇଁ କହିବ କହିଲେ ? ଏଇ ପିନ୍ଧନ୍ତୁ ଜୋତା
ପୁରୁଷୋ - ଜୋତା ?
ଅମର - ଜଗନ୍ନାଥ ସୁ ଏଣ୍ଡ କମ୍ପାନୀର ଫୁଟ୍ ୱ୍ୱେର ।
ପୁରୁଷୋ - ଜୋତା !
ଅମର - ଜଗନ୍ନାଥ ଟାଇମସ୍‌ର ଘଣ୍ଟା ବାନ୍ଧିଦେଲେ, ଜଗନ୍ନାଥ ଅପ୍‌ଟିକାଲ୍ସର ଚଷମା (ପିନ୍ଧାଇଲେ) ଜଗନ୍ନାଥ ପ୍ଲାଷ୍ଟିକ୍ ବ୍ୟାଗ୍ (ଧରାଇ ଦେଇ) ଏଥର ନମସ୍କାର ପଣ୍ଡାବାବୁ (ଆସନ୍ତି ପଦ୍ମା) (ପରସ୍ପରକୁ ଦେଖନ୍ତି)
ପଦ୍ମା - ଗେଷ୍ଟଙ୍କୁ ଏଇଠି ଏମିତି କଣ ବାହାର ଠିଆ କରାଉଥିବ ?
ଅମର - ନାଇଁ ନାଇଁ ମୋର ତେଣେ ବହୁତ ଏନ୍‌ଗେଜ୍‌ମେଣ୍ଟ ଅଛି କେବଳ...

| | | |
|---|---|---|
| ପୁରୁଷୋ | - | ଆଚ୍ଛା କହିଲେନି ତ ଆମେ ଆପଣଙ୍କ କି ସେବା କରିପାରିବୁ ? |
| ଅମର | - | ନାଇଁ ଆପଣ କାହିଁକି କରିବେ, ମୁଁ କରିଦେଉଛି (ଆଟାଚି ବାହାର କରି) ତିନିଲକ୍ଷ ଟଙ୍କା ଅଛି |
| ଉଭୟେ | - | ତିନିଲକ୍ଷ ? |
| ଅମର | - | ଆହୁରି ଦିଲକ୍ଷ ଦେବି । |
| ପୁରୁଷୋ | - | କଣ ପାଇଁ |
| ଅମର | - | ଜଗନ୍ନାଥଙ୍କର ଅନେକ ପୋଥି ପୁରାଣ ଅଛି |
| ପଦ୍ମା | - | ଅଛିମାନେ ଭର୍ତ୍ତି ହୋଇଛି |
| ପୁରୁଷୋ | - | ହଁ ବେକାରଟାରେ ପଡିଛି କେବଳ ଚନ୍ଦନ ଛିଟାରେ ପୋତି ପଡିଲାଣି । |
| ଅମର | - | ମୋର ସେଗୁଡା ଦରକାର ମୁଁ ତାକୁ ନେଇ ଆମ ଦେଶର ଗବେଷକମାନଙ୍କ ଦ୍ୱାରା ଗବେଷଣା କରାଇବି ଜଗନ୍ନାଥ ଏଡେବଡ କେମିତି ଓ କାହିଁକି ତାର ତଥ୍ୟ ବାହାର କରିବି ଏବଂ ଦରକାର ହେଲେ ଆମ ଦେଶରେ ଏମିତି ଏକ କ୍ଷମତାଶାଳୀ ଦେବତାଙ୍କୁ ପ୍ରତିଷ୍ଠିତ କରାଇବି । |
| ପୁରୁଷୋ | - | କିଛି ଚିନ୍ତା ନାହିଁ ମୁଁ ଦେଇଦେବି |
| ପଦ୍ମା | - | କେମିତି ଦେବ ଚାବିତ ବାପାଙ୍କ ପାଖରେ |
| ପୁରୁଷୋ | - | ବାପା ଚାବି ଦେବେନି |
| ଅମର | - | ବାପାଙ୍କରତ ବୟସ ହେଲାଣି ଆପଣ ମନ୍ଦିରର ଦାୟିତ୍ୱ ନଉନାହାନ୍ତି । |
| ପୁରୁଷୋ | - | ମନ୍ଦିର ଦାୟିତ୍ୱ, କଥାଟି ସିନା ଏମିତି ଧାଡିକରେ ସରିଗଲା ଦିନସାରା ପରିଶ୍ରମ କଲେବି ମନ୍ଦିର୍ କାମ ସରିବନି । |
| ଅମର | - | ଆପଣ ନିଜେ କାହିଁକି କରିବେ, ଜଣେ ଲେବର ରଖିଦେବେ |
| ପୁରୁଷୋ | - | ଲେବର ? |
| ଅମର | - | ହଁ ଆପଣ ମାଲିକ ହୋଇ ମନ୍ଦିରର ଚାବି ରଖିବେ, ଭଲମନ୍ଦ ବୁଝିବେ, ପୂଜା କରିବା ପାଇଁ ଅନ୍ୟ ଜଣେ ବ୍ରାହ୍ମଣ ରଖିବେ ମଜୁରି ନେବ କାମ କରିବ । |

ପଦ୍ମା - ଏଇତ ବଢ଼ିଆ ପ୍ରସ୍ତାବ

ପୁରୁଷୋ - ଅବଶ୍ୟ

ଅମର - ଆରେ ଆପଣ ଖାଲି ଚାବିଟା ହାତକରନ୍ତୁ ମୁଁ ମୋ ପାଖରେ ଏମିତି ପ୍ଲାନ୍ ଅଛି ଆପଣ ଏ ମନ୍ଦିରଟାକୁ ଗୋଟେ ଇଣ୍ଡଷ୍ଟ୍ରି ବା ଉଦ୍ୟୋଗ କରିଦେଇ ମାଲିକ ହେବେ ଆଉ ଲାଇଫ୍ କୁ ଏନଜୟ କରିବେ।

ପଦ୍ମା - ଏଇତ ବାପା ଆସୁଛନ୍ତି

ପୁରୁଷୋ - ଏଁ ବାପା ଆସୁଛନ୍ତି? ମୋତେ ଏ ବେଶରେ ଦେଖିଲେ ଚାବିତ ଦେବେନି ଠେଙ୍ଗାରେ ପିଟି ଘରୁ ତଡି ଦେବେ।

ପଦ୍ମା - ମଲା ସେ ତମ ଡ୍ରେସ୍ ଦେଖିବେ କେମିତି ଯେ, ରୁହ- (ଭିତରକୁ ଯାଇ ଚାଦରଟେ ଆଣି ପୁରୁଷୋତ୍ତମ ଉପରେ ପକାଇ ଦିଏ) ବାସ୍! ଯେମିତି ହେଉ ବାପାଙ୍କଠାରୁ ଚାବିଟା ହାତକୁ ନେବାକୁ ପଡିବ

ଅମର - ବାପା ଆସୁଛନ୍ତି! ମୋତେ ଏଠି ଦେଖିଲେ ସେ ସନ୍ଦେହ କରିବେ

ପଦ୍ମା - ଆପଣ ଭିତରକୁ ଆସନ୍ତୁ। ତମେ ବାପାଙ୍କ କଥା ବୁଝିଦିଅ (ଅମରକୁ ଭିତରକୁ ନେଇଯାଏ, ବ୍ରହ୍ମାନନ୍ଦ ଆସନ୍ତି)

ବ୍ରହ୍ମାନନ୍ଦ - କିରେ ପୁରୁଷୋତ୍ତମ ଏମିତି ଏକୁଟିଆ ଛିଡା ହୋଇଛୁ?

ପୁରୁଷୋ - ତମେ ଏ ପର୍ଯ୍ୟନ୍ତ ମନ୍ଦିରରୁ ଫେରି ନାହଁତ

ବ୍ରହ୍ମାନନ୍ଦ - ଓଃ, ଆଜି କଣ ନୂଆ, ମୁଁ ତ ପ୍ରତିଦିନ ଏମିତି ଏତିକି ବେଳେ ଠାକୁରଙ୍କ ପହୁଡ଼ ସାରି ଫେରେ

ପୁରୁଷୋ - ନାଇଁ ବାପା, ତମେ ଜୀବନରେ ଢେର କଷ୍ଟ କଲଣି ଆଉ ନୁହେଁ, ଏଥର ମୋତେ କିଛି କରିବାକୁ ଦିଅ

ବ୍ରହ୍ମାନନ୍ଦ - ଆରେ ମୋ ପରେ ଆଉ କରିବ କିଏ, ତୁ ତ କରିବୁ। ମୁଁ ଯେତେ ପର୍ଯ୍ୟନ୍ତ ପାରୁଛି କରି ଦଉଛି

ପୁରୁଷୋ - ନାଇଁ ନାଇଁ ଯାହା କଲ କଲ କାଲିଠୁ ମୁଁ କରିବି

ବ୍ରହ୍ମାନନ୍ଦ - ତୁ.. ତୁ ଏ ମନ୍ଦିର ଦାୟିତ୍ୱ..... ପାରିବୁ?

ପୁରୁଷୋ - ନ ପାରିଲେ ତୁମକୁ ପଚାରିବି। ଦେଲ, ମୋତେ ମନ୍ଦିରର ଚାବି ଦେଲ

ବ୍ରହ୍ମାନନ୍ଦ - ହଉ ହେଲା କାଲି ହଉ

ପୁରୁଷୋ - ନା ନା ରାତି ପାହିଲେ ତମେ ପୁଣି ଚାବି ଧରି ପଳେଇବ

ବ୍ରହ୍ମାନନ୍ଦ - (ହସି) ଆରେ ନା

ପୁରୁଷୋ - ନା ନା ମୋତେ ଚାବି ଦେଲ

ବ୍ରହ୍ମାନନ୍ଦ - ହଉ ନେ ରଖ ହେଲେ ମନେ ରଖିଥା, ଏ ଜଗନ୍ନାଥ ଆମ କୁଳ ଦେବତା (ଚାବି ଦେଲା ବେଳେ ଅଂଧାର)

(ଶ୍ରୀରଙ୍ଗା ଚରଣ ସେବାରେ ତୋହର.........)



## ତୃତୀୟ ଦୃଶ୍ୟ

( ଗର୍ଭଗୃହରେ ଆଲୋକ ଆସେ )

ଜଗନ୍ନାଥ - ବିଚରା ବ୍ରହ୍ମାନନ୍ଦ ଗୋସେଇଁ...

ବଳଭଦ୍ର - ବାସ୍ତବରେ ବ୍ରହ୍ମାନନ୍ଦ ଗୋସାଇଁ ବୃଦ୍ଧ ହୋଇଗଲେଣି ।

ସୁଭଦ୍ରା - ତାଙ୍କ କଣ୍ଠରେ ଆଉ ମନ୍ତ୍ରର ଓଁକାର ଧ୍ୱନୀ ସ୍ପଷ୍ଟ ହେଉନାହିଁ ।

ଜଗନ୍ନାଥ - ସେଥିପାଇଁତ ସେ ମୁକ୍ତି ପାଇଗଲେ

ବଳଭଦ୍ର - ମୁକ୍ତି ପାଇଗଲେ ?

ସୁଭଦ୍ରା - ହଁ, ମନ୍ଦିର ଦାୟିତ୍ୱ ପୁଅକୁ ସମର୍ପି ଦେଲେ

ଜଗନ୍ନାଥ - କିନ୍ତୁ, ତାଙ୍କୁ ସିନା ମୁକ୍ତି ଦେଇଦେଲେ ହେଲେ ଆମେ ବନ୍ଦୀ ହୋଇଗଲୁ

ସୁଭଦ୍ରା - କେମିତି ?

ଜଗନ୍ନାଥ - ଦେଖ ଦିବ୍ୟଚକ୍ଷୁ ଉନ୍ମୋଚନ କଲେ ସବୁ ଦିଶିବ

ବଳଭଦ୍ର - କଣ ଦିଶିବ ଜଗନ୍ନାଥ ?

ଜଗନ୍ନାଥ - ଏଣିକି ଏହା ଆଉ ମନ୍ଦିର ହୋଇ ରହିବନି ଏହା ଏକ ଇଣ୍ଡଷ୍ଟ୍ରି ହୋଇଗଲା, ଉଦ୍ୟୋଗ

ସୁଭଦ୍ରା - ଉଦ୍ୟୋଗ ?

ଜଗନ୍ନାଥ - ହଁ ଓଡିଆ ପୁଅ ଯିଏ ଦିନେ ଆମର ସେବକ ବୋଲି ପରିଚୟ ଦେଇ ଗର୍ବ ଅନୁଭବ କରୁଥିଲା ସେ ଆମର ମାଲିକ ବନିଗଲାଣି

ହାତରେ ବେତଧରି ଭକ୍ତଙ୍କୁ ବାଡଉଥିଲା ଏବେ ଆମକୁ ବାଡେଇବ,ଦେଖ ସେ ସମୟ କେମତି ହାତ ପାଖରେ- ଦିବ୍ୟଚକ୍ଷୁ ଖୋଲିଦିଅ ଭାଇ।

ସମୟ ବଦଳିଯାଏ- କହି କହି ଆସନ୍ତି ପୁରୁଷୋତ୍ତମ

ପୁରୁଷୋ - ଆଜ୍ଞା ହଁ ଏଠାରେ ସୁଲଭ ମୂଲ୍ୟରେ ମିଳେ ମହାପ୍ରସାଦ। କାନିକା, ଖିଚୁଡି ଅନ୍ନ, ବ୍ୟଞ୍ଜନ, ଶାକର, ବେସର ଡାଲି ଆଦି ସୁସ୍ୱାଦୁ ପ୍ରସାଦ କେବଳ ଏହିଠାରେ ମିଳେ, ବିବାହ, ବ୍ରତ, ଅନ୍ନପ୍ରାସନ୍ନ ଶୁଦ୍ଧିକ୍ରିୟା ଆଦି ନିରାମିଷ ଭୋଜନ ପାଇଁ ଏକମାତ୍ର ନିର୍ଭରଯୋଗ୍ୟ ମହାପ୍ରସାଦ ଯୋଗାଣ କେନ୍ଦ୍ର। ଡାକ ଯୋଗେ ନହେଲେ ମୋବାଇଲ୍‌ରେ ଯୋଗଯାଗା କରି ପାରନ୍ତି। (ଏହି ସମୟରେ ରିଂ ହୁଏ ) ହାଲୋ... ହଁ ହଁ ଜଗନ୍ନାଥ ଭୋଗ ସେବା କେନ୍ଦ୍ରରୁ କହୁଛି... କଣ କହିଲେ ଝିଅ ବାହାଘର... ହଁ ହଁ.... ଆମେ ଯୋଗାଇ ଦେବା.... କାନିକା ନେଲେ ଷାଠିଏ ଖିଚୁଡି ନେଲେ ପଚାଶଟଙ୍କା ଆଉ ସାଦା ନେଲେ ଚାଳିଶ ହଁ...ହଁ... ଠିକ ଅଛି ମୋର ଲୋକ ଅଛନ୍ତି ଆପଣଙ୍କ ଘରେ ପହଞ୍ଚି ସେଠି ବାଢ଼ିଦେଇ ଆସିବେ... ହଁ... ଆରେ ଜଗା ବଳିଆ କୋଉଁଠି ଅଛ।

(ଜଗନ୍ନାଥ ବଳଭଦ୍ର ଆସନ୍ତି )

ପୁରୁଷୋ - ଶୁଣ ଆଜି ସଂଧ୍ୟାରେ ବାରବାଟୀ ଗଉଡ ସାହୀରେ ଗୋଟେ ଝିଅ ବାହାଘର ଅଛି - ଦୁଇଶହ ଲୋକ ଖାଇବେ ପ୍ରସାଦ ରେଡି କରିଦିଅ ହଁ ଶୁଣ ଦୁଇଜଣ ଯିବ ଟ୍ରକ୍‌ରେ ନା ଟ୍ରଲିରେ

ବଳଭଦ୍ର - ଏଇ ଟ୍ରକରେ ନବା ନା ଟ୍ରଲିରେ ?

ଜଗନ୍ନାଥ - ଆଜ୍ଞା ବାରବାଟୀ ଭିତକୁ ଟ୍ରଲି ପଶିବନି, ଟ୍ରକରେ ନେଇଯିବା।

ପୁରୁଷୋ - ହଉ ଠିକ୍ ଅଛି (ମନେ ପଡିଯାଏ) କଣ କହିଲୁ ଟ୍ରଲି ପଶିବନି, ଟ୍ରକରେ ନେଇଯିବ ? ଏୟ, ଟ୍ରଲି ବଡ ନା ଟ୍ରକ ବଡ ?

ବଳଭଦ୍ର - ବେ, ଟ୍ରଲି ବଡ ନା ଟ୍ରକ ବଡ ?(ପିଟିବାକୁ ଉଦ୍ୟତ)। ନାଇଁ ଆଜ୍ଞା ଟ୍ରଲିରେ ନେଇଯିବା। (ଯାଆନ୍ତି)

ପୁରୁଷୋ - ଶୁଣ, ଖାଲି ପ୍ରସାଦ ପହଂଚାଇ ଦେଇ ପଳେଇ ଆସିବନି। ତାଙ୍କ ଲୋକମାନଙ୍କୁ ବାଢ଼ିଦେଇ ଆସିବ, ଟିକିଏ କମ୍‌କମ୍ ମାପଚୁପରେ ବାଢ଼ିବ, ବୁଝିଲ ?

ଜଗନ୍ନାଥ - ହଁ ଆଜ୍ଞା, ଯିଏ ଯାହା ମାଗିବ ତାକୁ ପେଟ ପୁରା ଖାଇବାକୁ ଦବା।

ବଳଭଦ୍ର - କ'ଣ କହିଲୁ, ପେଟ ପୁରା ଖାଇବାକୁ ଦବୁ, ବେ ମାଲ ସର୍ଟ ଅଛି। ନାଇଁ ଆଜ୍ଞା, ମାପଚୁପରେ ବାଡିବା।(ପୁଣି ଫୋନ୍)(ଏମାନେ ଯାଉଥିଲେ ଅଟକିଲେ)

ପୁରୁଷୋ - ହାଲୋ, ପୁରୁଷୋତ୍ତମ ପଣ୍ଡା କହୁଛି - କଣ କହିଲେ ବ୍ରତଘର.. ହଁ...ହଁ ହେଲା ହେଲା ଦି ଦିନ ଆଗରୁ ଏଡ୍‌ଭାନ୍ସ ଦେଇଯିବେ, ଆମେ ପ୍ରସାଦ ପହଂଚାଇ ଦବୁ। ଏଇ ପୁଣି ଗୋଟେ ବ୍ରତଘର।

ଜଗନ୍ନାଥ - ପୁଅର ନା ଝିଅର ?

ବଳଭଦ୍ର - ଆଜ୍ଞା, ପୁଅର ନା ଝିଅର ?

ପୁରୁଷୋ - ବେ, ଝିଅର ବ୍ରତଘର ହୁଏ ? (ବିରକ୍ତ ହୁଅନ୍ତି)

ବଳଭଦ୍ର - ବେ, ଝିଅର ବ୍ରତଘର ହୁଏନା ? (ପିଟନ୍ତି)

ପୁରୁଷୋ - ପନ୍ଦରଦିନ ପରେ

ଜଗନ୍ନାଥ - ତାହାଲେ ଆଜ୍ଞା ଏବେଠୁଁ ଭାତ ବସେଇ ଦେବା

ପୁରୁଷୋ - ହାଟ୍ ବୋକାଟା, ପନ୍ଦରଦିନ ପରେ ବ୍ରତଘର ଏବେଠୁଁ ଛାନିଆ ହୋଇଗଲେ ଚଳିବ ? (ପୁଣି ଫୋନ୍) ହାଲୋ...କଣ କହିଲେ ବାପ ଶୁଦ୍ଧି.... ନା ନା ହୋଇପାରିବନି.. ପାଞ୍ଚଦିନ ରହିଲା.... ଆମେ ଦବୁ କେମିତି ? ଅତିକମ୍‌ରେ ପନ୍ଦରଦିନ ହାତରେ ରଖି କହିବେନା ...କଣ କହିଲେ ଅଧିକା ଦେବେ। ହେଲା ଏଥର ନହେଲେ କିଛି ଅଧିକ ନେଇ ଏଡଜଷ୍ଟ କରିଦବା, ହଁ ଶୁଣନ୍ତୁ, ଆଉ ଯଦି କେବେ ବାପଶୁଦ୍ଧି ହେବ ତାହାଲେ ମାସେ ଆଗରୁ ଏଡ୍‌ଭାନ୍ସ ଦେଇଦେବେ

ଉଭୟେ - ଆଉ ? ଏତେ ଶୀଘ୍ର କଣ ଦେଇ ହେବ ?

ପୁରୁଷୋ - ଆରେ ଛିଡା ହୋଇଛ କଣ ? (ଫୋନ ଆସିବାର ସୂଚନା ମିଳେ)

(ଦୁହେଁ ବସିପଡନ୍ତି) ବେ ବସିପଡିଲ କଣ, ଯାଅ, ଲାଗ (ଦୁହେଁ ଯାଆନ୍ତି) ବିବାହ ବ୍ରତରେ ଶୁଦ୍ଧ ଜଗନ୍ନାଥ ପ୍ରସାଦ ସୁଲଭ ମୂଲ୍ୟରେ ମିଳୁଛି - ନିଅନ୍ତୁ (ଦାସିଆ ଆସେ)

ଦାସିଆ - ଗୋସାଇଁ ମହାପ୍ରଭୁଙ୍କ ଆଗରେ ପ୍ରସାଦଲାଗି ହେଲାଣି

ପୁରୁଷୋ - ହଁ ହଁ, କେତେବେଳୁ ସରିଲାଣି

ଦାସିଆ - (ପତ୍ର ପକେଇ) ଦିଅ ଗୋସାଇଁ ଦିଅ, ମୋତେ ଟିକେ ପ୍ରସାଦ ଦିଅ।

ପୁରୁଷୋ - କେତେ ନବୁ - ଆଗ ପଇସା ଦେଇ ରସିଦ ନେ, ଭିତରେ ଜଗା ବଳିଆ ଅଛନ୍ତି, ତାଙ୍କୁ ରସିଦ୍ ଦେଖେଇବୁ, ସେମାନେ ତୋତେ ପ୍ରସାଦ ଦେବେ।

ଦାସିଆ - ପଇସା କାହୁଁ ପାଇବି, ରସିଦ ବା ମୋର କଅଣ ହେବ, ମୋତେ ମୋ ପ୍ରଭୁଙ୍କ ପ୍ରସାଦ ଦିଅ ଗୋସାଇଁ

ପୁରୁଷୋ - କଣ ମୋଫତରେ ? ସେ କାଳ ଗଲାଣି, ଏବେ ମହାପ୍ରସାଦ କିଣିବାକୁ ପଡିବ, ବୁଝିଲୁ ?

ଦାସିଆ - ହେଲେ ଗୋସାଇଁ ମୋର ତ ପଇସା ନାହିଁ ମୁଁ କଣ...

ପୁରୁଷୋ - ପଇସା ନାହିଁତ ପ୍ରସାଦ ନାହିଁ (ଯାଆନ୍ତି)

ଦାସିଆ - ଗୋସାଇଁ, ଗୋସାଇଁ ...ଗୋସାଇଁ ( ଫେରିପଡନ୍ତି) ଜଗା ତୁ ଶେଷରେ ଭାତ ବିକି ବସିଲୁ ? ଧିକ୍ ଧିକ୍ ତୋର ପ୍ରଭୁ ପଣିଆ, ଠିକ୍ ଅଛି ବିକ୍, ଭାତ ବିକି ବଡଲୋକ ହଅ ହେଲେ ମୁଁ କିଣିବିନି, ଏଇଠି ତୋ ନାଁ ଧରି ଖାଲିପେଟରେ ମରିବି ପଛକେ ତୋ ହାତରୁ ଭାତ କିଣି ଖାଇବିନି - ତୁ କହ କେମିତି କିଣିବି ? ମୋ ହାତରେ ପଇସା ଅଛି ? ହେଲା, ମୁଁତ ଭୋକ ଶୋଷରେ ତୋ ନାଆଁ ଧରି ମରିଯିବି, ତୁ, କଣ ଏଇ ଭାତ ବିକି ପୂଜା ପାଇବୁ ? କହ କହ ଉତ୍ତର ଦେ, ଏଇଠି ତୋ ମୁହଁରୁ ଉତ୍ତର ନପାଇବାଯାଏ ପଡି ରହିଲି - ମାରିଲେ ମାର୍ ତାରିଲେ ତାର୍ ।

(ଅଂଧାର ହୋଇ ପୁଣି ଆଲୋକ ଆସେ । ପଦ୍ମା ଆସନ୍ତି ସେମିତି ବିଜ୍ଞାପନ ଶୈଳୀରେ)

ପଦ୍ମା - ଜଗନ୍ନାଥଙ୍କର ବିଶୁଦ୍ଧ ଭଜନ କ୍ୟାସେଟ - ଜଗନ୍ନାଥ ଇଲେକ୍ଟ୍ରିକାଲ୍ସର ମନ ମତାଣିଆ ଭଜନ ଓ ଜଣାଣ 'କଳାକଳା କାଳିଆ କାହ୍ନୁ... ବଳଭଦ୍ର ଭିଜୁଆଲ ଭଜନ ଭି.ସି.ଡି. ଶସ୍ତା ଓ ସୁଲଭ ମୂଲ୍ୟରେ ନିଅନ୍ତୁ ଏହି ଭଜନ ମାଧ୍ୟମରେ ଜଗନ୍ନାଥଙ୍କୁ ଭଜନ୍ତୁ - (ଫୋନ୍ କଲ୍) ହାଲୋ କିଏ ଜଗନ୍ନାଥ ବାବୁ ଆସନ୍ତୁ ଆସନ୍ତୁ ମୁଁତ ଆପଣଙ୍କୁ ଅପେକ୍ଷା କରିଛି... ହଁ...ହଁ... ଆସନ୍ତୁ... (ଫୋନ୍ ରଖି) ଭଜନ କାଇଁଚ ମାଳୀ, ଭଜନ ଗଳାମାଳିଆରେ ଲବଣି ଚୋର ମାଡୁଆ ଜଗା. ଇତ୍ୟାଦି ମନଛୁଆଁ ଗୀତରେ ଭରା ଆମର ଏ ନୂତନ କ୍ୟାସେଟ୍ ଓ ଭିସିଡି. - (ଜଗନ୍ନାଥ ଆସନ୍ତି)

ଜଗନ୍ନାଥ - ମ୍ୟାଡାମ ନମସ୍କାର

ପଦ୍ମା - ହଁ ନମସ୍କାର, କଣ ହେଲା ଗୀତ ଲେଖିଲେ ।

ଜଗନ୍ନାଥ - କେତେ ଆଉ ଲେଖିବି କାଲିପରା ପନ୍ଦରଟା ଭଜନ ଲେଖିଥିଲି ।

ପଦ୍ମା - ସିଏ କଣ ଅଛି ? ରେକର୍ଡ଼ିଂ ସରି ମାର୍କେଟ୍‌କୁ ଗଲାଣି, ସରିଯିବଣି, ଦିଅନ୍ତୁ ଲେଖନ୍ତୁ ରୟାଲିଟି ନ ହେଲେ ଆଉ ଶହେ ଅଧିକ ଦେବି

ଜଗନ୍ନାଥ - ଜଗନ୍ନାଥଙ୍କ ଭଜନ କଣ ଏତେ ସହଜରେ ଲେଖିହେବ ?

ପଦ୍ମା - ଅସୁବିଧା କୋଉଁଠି କେବଳ କାଳିଆ, କଳା, କହ୍ନେଇ ଜଗା, ଶ୍ୟାମ, ରାଧା, ରାଇ ଲହୁଣୀ, ଦହିର ଏମିତି କେତେ ଶବ୍ଦ ରଖିଦେଇ ଯାହା ଲେଖନ୍ତୁ ସିଏ ଭଜନ

ଜଗନ୍ନାଥ - ନା ନା ସମାଲୋଚନା ହୋଇଯିବ

ପଦ୍ମା - ହାଃ ଭଜନ କେହି ବୁଝନ୍ତିନି କେବଳ ଶୁଣନ୍ତି ଟାଇମ୍ ପାସ୍ ତାଛଡା ଆମେ ପିକ୍‌ରାଇଜସନ୍ ବେଳେ ଦି ଚାରିଥର ଜଗନ୍ନାଥଙ୍କୁ ଦେଖେଇ ଦେଲେ ବାସ୍ । ଆପଣ ଲେଖନ୍ତୁ, ଅନ୍ୟକଥା ମୁଁ ବୁଝିବି, ଯାଆନ୍ତୁ

ଯାଆନ୍ତୁ ନିଅନ୍ତୁ ଏଇ ହଜାରେ ଟଙ୍କା ଏଡ଼୍‌ଭାନ୍ସ କାଲି ସକାଳେ ଅତିକମ୍‌ରେ ଶହେଟା ଭଜନ ଦରକାର । ନିଅନ୍ତୁ (ଧରାଇ ଦିଅନ୍ତି) ବଳଭଦ୍ର , ସୁଭଦ୍ରା ଆସିଛି)

ଉଭୟେ - ନମସ୍କାର ମ୍ୟାଡ୍‌ାମ

ପଦ୍ମା - ନମସ୍କାର ହଁ ମୁଁ ଇଣ୍ଟରଡ୍ୟୁସ୍ କରି ଦେଉଛି ଇଏ ଶ୍ରୀ ଜଗନ୍ନାଥ ମହାନ୍ତି ଭଜନ ଲେଖକ ଇଏ ହେଉଛନ୍ତି ପ୍ରସିଦ୍ଧ ଗାୟକ ସୁରକର ଶ୍ରୀ ବଳଦେବ ଶତପଥୀ

ବଳଭଦ୍ର - ଆଉ ଇଏ ସୁଶ୍ରୀ ସୁଭଦ୍ରା ସ୍ୱାଇଁ, ନର୍ତ୍ତକୀ (ଯିଏ ଯାହାକୁ ପ୍ରଣାମ କଲେ)

ପଦ୍ମା - ସୁଭଦ୍ରା ତୁମେ ନାଚିବ ? ଏଇ ଡ୍ରେସରେ ? କ୍ୟାସେଟ୍ ବିକ୍ରୀ ହେବତ ?

ସୁଭଦ୍ରା - ଭଜନରେ କଣ.....

ପଦ୍ମା - ଆରେ ନାମ ସିନା ଭଜନ, ଗ୍ଲାମର ବିନା କଣ କ୍ୟାସେଟ୍ ଚାଲିବ, ନା ନା ଖୋଲ, ଅର୍ଦ୍ଧା ଲଙ୍ଗୁଳା ଦେହରେ ନାଚିବାକୁ ପଡିବ । ଯାଅ ଯାଅ ଆପଣମାନେ ଯାଆନ୍ତୁ - କାଲି ରେକର୍ଡିଂ

**(ସମସ୍ତେ ଯାଆନ୍ତି, ଦାସିଆ ଭଜନ ଗାଇଗାଇ ଆସନ୍ତି) ଜଗା ଜଗିଥାରେ ଜଗି ଥା ଓଡିଆ ଜାତିକୁ....**

ପଦ୍ମା - କଣ ଏମିତ ଭଜନ ଗାଉଛ ?

ଦାସିଆ - ମୁଁ ଗାଉନାହିଁ, ମୋ ଜଗାକୁ ଡାକୁଛି

ପଦ୍ମା - ଏମିତି ସ୍ୱର କରି ଡାକି ପାରିବନି

ଦାସିଆ - ଆଉ ?

ପଦ୍ମା - କ୍ୟାସେଟ କିଣି ନେଇ ବଜେଇ ବଜେଇ ଶୁଣିବ ହେଲା

ଦାସିଆ - ବଡ ଅଦ୍ଭୁତ କଥା, ମୋ ମନର କଥା, ମୋ ହୃଦୟର କଥା ମୁଁ ଗାଇ ପାରିବିନି ?

ପଦ୍ମା - ନା ସେମିତି ଗାଇଲେ ଲୋକେ ହସିବେ ଯାଅ ପଇସା ଆଣ, କ୍ୟାସେଟ୍ କଣିନେଇ ଶୁଣ ।

ଦାସିଆ - ପଇସା ? କୋଉଁଠୁ ପାଇବି

ପଦ୍ମା - କାହିଁକି, ଜଗନ୍ନାଥତ ତୋତେ ଖଣି, ପଥର ନଦୀ ସମୁଦ୍ର ମାଟି ପବନ ଦେଇଛନ୍ତି ସେଗୁଡାକୁ ବିକି ଭାଙ୍ଗି ପଇସା ଆଣି ଭଜନ କିଣି ଶୁଣ (ଯାଉ ଯାଉ) ମୋଫତରେ ଭଜନ (ଯାଏ)

ଦାସିଆ - ଇ...ଏ କି ଲୀଳା.. ପ୍ରସାଦ ବିକିଲୁ- ଭଜନ ଗାଇ ପେଟ ପୁରାଇବି ଭାବିଲି ଭଜନ ବି ବିକିଲୁ ? ହଉ

(ଭାବନା ଭାଙ୍ଗିଯାଏ ଗର୍ଭଗୃହକୁ ଆଲୋକ ଆସେ)

ବଳଭଦ୍ର - ଜଗନ୍ନାଥ ଏକଣ କହୁଛୁ ?

ସୁଭଦ୍ରା - ନା ଭାଇ ଓଡିଆମାନେ ଏମିତି ହୋଇପାରିବେନି

ଜଗନ୍ନାଥ - ଅପେକ୍ଷା କର

ଜଗନ୍ନାଥ - ଏ ଓଡିଆ ଆମ ପ୍ରସାଦ ନିଜେ ଖାଇବିନି ,ବିକିଦେବ। ସେହି ପଇସାରେ ମଦ ମାଂସ ଭକ୍ଷଣ କରିବ ଭଜନ ନିଜେ କରିବନି- ଭଜନ ବିକି ବଡ ଲୋକ ହେବ

ବଳଭଦ୍ର - ନା ଆମେ ଥାଉଁଥାଉଁ ଏହା କରେଇ ଦବୁନି

ସୁଭଦ୍ରା - ବଡଭାଇ ଠିକ୍ କହିଛନ୍ତି

ଜଗନ୍ନାଥ - ଆମେ କଣ କରିପାରିବା ଭାଇ ସେ ପରା ଆମକୁ ଗଢ଼ିଛି, ଗଢିଲା ବେଳେ ଆମର ହାତ ଗୋଡ ଗଢ଼ିନାହିଁ ଆମେ କେବଳ ଜଳଜଳ କରି ତା କୀର୍ତ୍ତି ଦେଖିବା ପାଇଁ ଆମର ଏତେବଡବଡ ଆଖି ଦେଇଛି । ସବୁ ଦେଖି ମଧ କିଛି କରି ପାରିବା ନାହିଁ ବୋଲି ହାତ କରିନିକି ଗୋଡ କରିନି ।

ବଳଭଦ୍ର - ତେବେ

ଜଗନ୍ନାଥ - ଅପେକ୍ଷା କର (ଅଂଧାର)

## ଚତୁର୍ଥ ଦୃଶ୍ୟ

(ପଣ୍ଡାଙ୍କ ଘର ବ୍ରହ୍ମାନା କ୍ରୋଧ ଜର୍ଜରିତ ହୋଇ ମାତ୍ର କେତେକ ଜିନିଷ ଧରି ଘରୁ ବାହାରି ଯାଉଥା'ନ୍ତି ପଛେ ପଛେ ପଦ୍ମା)

ବ୍ରହ୍ମାନା - ନା ନା ନା ପୂର୍ବର ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଲେବି ମୁଁ ମୋ ପ୍ରଶ୍ନର ଉତ୍ତର ନ ପାଇଲା ପର୍ଯ୍ୟନ୍ତ ଏ ଘରେ ଜଳବି ସ୍ପର୍ଶ କରିବିନି ।

ପଦ୍ମା - ହଉ ଆପଣଙ୍କ ପୁଅ ଆସନ୍ତୁ ସେ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବେ

ବ୍ରହ୍ମାନା - ତମେ କଣ ଜାଣିନ ? ତମଠୁ କଣ ମୋ ପୁଅ ବେଶୀ ଜାଣେ ତମଠୁ କଣ ସେ ବେଶି ଜାଣିଥିବ ? ବୁଝିଲ ପଦ୍ମା ଆଜି କାଲିର ପୁଅମାନଙ୍କୁ ମୁଁ ବେଶ ଜାଣେ । ବାହାହେଲା ପର୍ଯ୍ୟନ୍ତ ବାପର, ଆଉ ବାହାହେବାର ଠିକ୍ ପରଦିନଠୁ ପତ୍ନୀର ପଣତ ତଳେ ମୁହଁଜାକି ପତ୍ନୀର କ୍ରୀତଦାସ ହୋଇଯାଆନ୍ତି । ଏଗୁଡ଼ା କାପୁରୁଷ, ଭୀରୁ ସେ କଣ କହିବ, ତମେ କୁହ ଏତେ ଟଙ୍କା, ଏତେ ସବୁ ଆଧୁନିକ ସରଞ୍ଜାମ କୋଉଠୁ ଆସିଲା ? କିଏ ଦେଲା ?

ପଦ୍ମା - କହିଲି ପରା ଜଗନ୍ନାଥ ଦେଇଛନ୍ତି ।

ବ୍ରହ୍ମାନା - ଜଗନ୍ନାଥ ଦେଇଛନ୍ତି ? ମୁଁ ପୂଜା କରି ଜୀବନ କାଟିଦେଲି ଜଗନ୍ନାଥ ମୋତେ ଖଣ୍ଡେ କୁଡ଼ିଆ ଦେଲେନି ଆଉ ଇଏ କଣ କଲାଯେ ଯାକୁ

ଲକ୍ଷଲକ୍ଷ ଟଙ୍କା ଦେଇଦେଲେ ? ମିଛକଥା ଜଗନ୍ନାଥ ଅର୍ଥ ସଂପଦ ଦିଅନ୍ତିନି ସେ ଦିଅନ୍ତି ଆଶୀର୍ବାଦ ।

ପଦ୍ମା - ସେହି ତାଙ୍କରି ଆଶୀର୍ବାଦରୁ ଏଗୁଡ଼ିକ ହୋଇଛି ।

ବ୍ରହ୍ମାନ - ନା, ତମେ ଚୋରୀ କରୁଛ, ଧପ୍‌ପାବାଜୀ କରୁଛ କାହା ସହିତ ବିଶ୍ୱାସଘାତକତା କରୁଛ, ତେଣୁ ମୁଁ ସତ୍ୟ ନଜାଣିଲା ପର୍ଯ୍ୟନ୍ତ ଏ ଘର ଜଳ ବି ସ୍ପର୍ଶ କରିବିନି । (ପୁରୁଷୋତ୍ତମ ପ୍ରବେଶି)

ପୁରୁଷୋ - ତମେ ଜଳସ୍ପର୍ଶ କଲେ କେତେ ନକଲେ କେତେ, ଜୀବନପାଇଁ ଯାହା ଦରକାର ଆମେ ତାହା ଯେକୌଣସି ଉପାୟରେ ସଂଗ୍ରହ କରିଛୁ ଏଥିରେ ନା ତମର କିଛି କରିବାର ଅଛି ନା କହିବାର ଅଛି । ଚୁପ୍‌ଚାପ ଦେଖ ଶୁଣ ଆଉ ତୁମ ପ୍ରିୟ ଜଗନ୍ନାଥଙ୍କୁ ଭଜନ କର ।

ବ୍ରହ୍ମାନ - ମୁଁ ପଶୁ ନୁହେଁ ଜଣେ ମଣିଷ

ପୁରୁଷୋ - ଦେବତା ହୋଇପାର । ତମର ଏବେ ବିଶ୍ରାମ ଅର୍ଥାତ ଅବସର ସମୟ ତେଣୁ ନିଜ ସୀମା ଭିତରେ ରହିଲେ ସୁନ୍ଦର ।

ବ୍ରହ୍ମାନ - ଆରେ ପୁରୁଷୋତ୍ତମ ମୁଁ ତୋ ବାପା ନା ?

ପୁରୁଷୋ - ବାପର ବି ଗୋଟିଏ ସୀମା ଅଛି

ବ୍ରହ୍ମାନ - ଆଉ ପୁଅ ପାଇଁ କିଛିନାହିଁ

ପୁରୁଷୋ - କଣ ଆଉ ଥାଆନ୍ତା ? ବାପ ହୋଇ ମୋ ପାଇଁ କଣ କରିଛ ? କଣ ରଖିଛ ? କଣ ପାଇଁ ତମକୁ ସମ୍ମାନ ଦେବି ? ତମ ଅଧିକାର ଦେବି ? ହଁ ମୁଁ ଚୋରୀ କରୁଛି, ରାହାଜାନୀ କରୁଛି, ବିଶ୍ୱାସଘାତକତା କରୁଛି । ସେହି ଉପାର୍ଜିତ ଅର୍ଥରେ ଖାଦ୍ୟ ଖାଇବାର ଇଚ୍ଛାହେଲେ ଖାଅ ନହେଲେ-

ବ୍ରହ୍ମାନ - ଯାଅ ? ଛି ଛି ଧିକ୍ ମୋ ବାପ ପଣକୁ ଆଉ ଶତଧିକ୍ ତୋର ପୁଅ ଜନ୍ମକୁ । ଏଇଥି ପାଇଁ ଲୋକ ପୁଅ ଖୋଜେ ? ଏଇଥି ପାଇଁ ଲୋକ ଶିବ ପୂଜେ ? ଏଇଥି ପାଇଁ ଲୋକ ଦୁଃଖ ଭୋଗେ ?

ପୁରୁଷୋ - ସେ ପ୍ରଶ୍ନ ତୁମେ ତମ ଜଗନ୍ନାଥଙ୍କୁ ପଚାର

ବ୍ରହ୍ମାନା - ଚୁପ୍‌କର, ଜଗନ୍ନାଥଙ୍କୁ ପ୍ରଶ୍ନ ପଚରା ଯାଏନି। ଉତ୍ତର ଦିଆଯାଏ। ଆଉ ସେ ପ୍ରଶ୍ନକଲେ ସେ ପ୍ରଶ୍ନର ଉତ୍ତର ତୁ ଦେଇପାରିବୁ ତ ? ଦେ ଚାବି ଦେ।

ପୁରୁଷୋ - ଚାବି, କି ଚାବି

ବ୍ରହ୍ମାନା - ମନ୍ଦିର ଚାବି

ପୁରୁଷୋ - ନା, ଏ ମନ୍ଦିର ଏବେ ମୋର। ମୁଁ ବଡ଼ ପଣ୍ଡା। ତେଣୁ ଚାବି ମୋ ପାଖରେ ରହିବ।

ବ୍ରହ୍ମାନା - କଣ କହିଲୁ ମନ୍ଦିର ତୋର ? ନା ମନ୍ଦିର ଜଗନ୍ନାଥଙ୍କର।

ପୁରୁଷୋ - ଜ..ଗ..ନା..ଥ ? କୋଉ ଜଗନ୍ନାଥ, ମୁଁ ଚାବି ଖୋଲିଲେ ତାଙ୍କ ମୁହଁଦିଶେ, ମୁଁ ଭୋଗ ବାଢ଼ିଦେଲେ ତାଙ୍କ ପେଟ ପୂରେ, ମୁଁ ଘଣ୍ଟି ପିଟିଲେ ତାଙ୍କ ନିଦଭାଂଗେ।

ବ୍ରହ୍ମାନା - ଖବରଦାର, (ପିଟୁଥିଲେ, ହାତ ଧରିନିଅନ୍ତି ପୁରୁଷୋତ୍ତମ) **ଲାଳୟେତ ପଞ୍ଚବର୍ଷାଣି.......**

ପୁରୁଷୋ - ସେ ବୟସ ମୁଁ ଅତିକ୍ରମ କରି ସାରିଲିଣି

ବ୍ରହ୍ମାନା - ଠିକ୍ ଅଛି ମୁଁ ସେହି ଜଗନ୍ନାଥଙ୍କ ନାମରେ ଶପଥ କରି ଯାଉଛି ଜୀବନରେ ଥିବା ପର୍ଯ୍ୟନ୍ତ ଏ ଘର ମାଟି ମାଡ଼ିବିନି (ଯାଆନ୍ତି)

ପୁରୁଷୋ - ହୁଁ

ପଦ୍ମା - ବୟସ ହେଲେ ଲୋକମାନେ ଏମିତି ହୁଅନ୍ତି। ସୁଖ ଭାତ ଗଳା କୁଣ୍ଡାଏ। ଏବେ କୋଉଠିକୁ ଯିବ ? କିଏ ରଖିବ ?

ପୁରୁଷୋ - ବଳେ ପେଟ ଡାକିଲେ ଆସି ପହଞ୍ଚିଯିବେନି।

ପଦ୍ମା - ଛାଡ଼, ହଁ ଏବେ ଅମର ବାବୁ ଫୋନ୍ କରିଥିଲେ।

ପୁରୁଷୋ - ଅମର ବାବୁ ଫୋନ୍ କରିଥିଲେ ? କଣ କହୁଥିଲେ ?

ପଦ୍ମା - ଯୋଉ ପୁରାଣ ପୋଥି ସବୁ ନେଇଥିଲେ ତାଙ୍କର ବହୁତ କାମରେ ଆସିଛି। ଏବେ ଗୋଟେ ଅତିଖୁସିର ଖବର ନେଇ ପହଞ୍ଚୁଛନ୍ତି ବୋଲି କହିଲେ-

ପୁରୁଷୋ - ଅତିଖୁସିର ଖବର (ଅମର ପହଞ୍ଚନ୍ତି)

ଅମର - ମାନେ ଶୁଣିଲେ ଆପଣ ଖୁସିରେ ପାଗଳ ହୋଇଯିବେ

ପଦ୍ମା - ଆପଣଙ୍କ ପାଇଁ ପାଗଳ ହେବାରେ ଆନନ୍ଦ ଅଛି

ପୁରୁଷୋ - କୁହନ୍ତୁ

ଅମର - ପୋଥିଗୁଡ଼ା ବାସ୍ତବିକ୍ ଅମୂଲ୍ୟ, ତାର ମୂଲ୍ୟ କେହି ଦେଇ ପାରିବନି । ପୋଥି ଦେଖି ଆମ ଫିଲୋସଫର ବୈଜ୍ଞାନିକ ଆଉ ଶିଳ୍ପୀମାନେ ବିଶ୍ୱାସ କରିପାରୁ ନାହାନ୍ତି । ଏଥିରେ ଅନେକ କିଛି ରହିଛି । ସେଥିପାଇଁ ସେ ଆଉ ଗୋଟେ ଚମତ୍କାର ଅଫର ଦେଇଛନ୍ତି ।

ପଦ୍ମା - ହଉ ଆସନ୍ତୁ ଭିତରକୁ ଆସନ୍ତୁ ।

ଅମର - ନାଇଁ ମାଡାମ ଏମିତି ଖୁସିର ଖବରଟା ଆଉ ଅଧିକ ସମୟ ମନ ଭିତରେ ଚାପି ପାରୁନି

ପୁରୁଷୋ - ଠିକ୍ ଅଛି କହନ୍ତୁ

ଅମର - ଆମର ସାଇଣ୍ଟିଷ୍ଟ ମାନେ କହୁଛନ୍ତି ଯେଉଁ ମୂର୍ତ୍ତିର ନାମରେ ଫଟୋରେ ଏତେ ଶକ୍ତି ରହିଛି, ଯାହାର ପୋଥି ପୁରାଣ ଏତେ ସମୃଦ୍ଧ ସେ ମୂର୍ତ୍ତି କେତେ ସୁନ୍ଦର କେତେ ଶକ୍ତିମାନ କେତେ ମୂଲ୍ୟବାନ୍ ହୋଇନଥିବ ।

ପୁରୁଷୋ - ନିଶ୍ଚୟ, ଏ ଜଗତ ବିଖ୍ୟାତ ମୂର୍ତ୍ତିକୁ ସ୍ୱୟଂ ଦେବଶିଳ୍ପୀ ବିଶ୍ୱକର୍ମା ନିର୍ମାଣ କରିଥିଲେ ।

ଅମର - ସେଥିପାଇଁ ଆଉ ଆଟାଚିରେ ନୁହେଁ କିମ୍ବା ବେଗ୍‌ରେ ନୁହେଁ ଏବେ ଚେକ୍‌ରେ, ପୁଣି Blank Cheque ଯେତେ ପାରିବେ ଲେଖିନେବେ ।

ପୁରୁଷୋ / ପଦ୍ମା - Blank Cheque ? କଣ ପାଇଁ ?

ଅମର - ଆମର ସେ ତିନୋଟି ମୂର୍ତ୍ତି ଦରକାର ।

ପୁରୁଷୋ - ମୂର୍ତ୍ତି ?

ଅମର - ହଁ, ଯାହା ଚାହିଁବେ, ଯେତେ ଚାହିଁବେ ଆମେ ଦେବୁ

ପୁରୁଷୋ - କିନ୍ତୁ.....

ପଦ୍ମା - କଣ ହେଲା ? ଜଗନ୍ନାଥ ଆମକୁ କଣ ଦେବେ କେତେ ଦେବେ ? ଅମର ବାବୁତ Blank Cheque ଦେଇ ଦେଲେଣି ।

ଅମର - ଜୀବନରେ ସୁଯୋଗ ଥରେ ଆସେ ।

ପଦ୍ମା - ସୁଯୋଗକୁ ହାତଛଡ଼ା କଲେ ସାରାଜୀବନ ପସ୍ତେଇବାକୁ ପଡ଼ିବ ।

ପୁରୁଷୋ - କିନ୍ତୁ ମୂର୍ତ୍ତି ନେବେ କେମିତି ?

ଅମର - ତାର ବନ୍ଦୋବସ୍ତ ମୁଁ କରିବି

ପୁରୁଷୋ - ମୋତେ କିନ୍ତୁ ......

ଅମର - ଡରିବାର ନାହିଁ, ରାତିରେ ନେଇଯିବି କେହି ଜାଣିବି ପାରିବେନି ।

ପଦ୍ମା - ବାସ୍ ରାତିରେ କିଏ ଦେଖିବ ।

ପୁରୁଷୋ - ଠିକ୍ ଅଛି ସଂଧ୍ୟା ଆରତୀ ପରେ ମୁଁ ମୂର୍ତ୍ତି ଗୁଡ଼ାକୁ ଗୋଟେ ପରେ ଗୋଟେ ବାହାରକୁ କାଢ଼ିଦେବି

ଅମର - ନା, ସେ ଦାସିଆଟାକୁ ମୋତେ ଡର ।

ପୁରୁଷୋ - ହଁ, ସେ ଜାଣିଲେ କଞ୍ଚା ଚୋବେଇ ଦବ ।

ପଦ୍ମା - ତାହାଲେ....

ଅମର - ଶୁଣନ୍ତୁ (କାନପାଖରେ କଣ କହିଲେ)

ପୁରୁଷୋ - ଠିକ୍ ଅଛି, ଭୋଗରେ ଭାଂଗ ମିଶେଇ ଦାସିଆକୁ ଖୁଆଇଦେଲେ ସେ ଶୋଇପଡ଼ିବ

ଅମର - ହଁ ଏଇ Cheque ନାଇଁ ଆପଣଙ୍କୁ ନୁହେଁ ମାଡାମ ନିଅନ୍ତୁ ।

ପଦ୍ମା - Ok

(ଆଲୋକ ଲିଭିଯାଏ, ଗର୍ଭଗୃହକୁ ଆଲୋକ ଆସେ)

ବଳଭଦ୍ର - ଏ କଣ ହେଲା ଜଗନ୍ନାଥ ?

ଜଗନ୍ନାଥ - ଆମେ ବିକ୍ରୀ ହୋଇଗଲୁ ଭାଇନା

ସୁଭଦ୍ରା - ଏସବୁ କଣ ହେଉଛି ଭାଇନା

ଜଗନ୍ନାଥ - ପୁରୁଷୋତ୍ତମ ବଡ଼ପଣ୍ଡା ଆମକୁ ବିକି ଦେଲା

ବଳଭଦ୍ର - କାହିଁକି, ସେ କଣ ଓଡ଼ିଆ ନୁହେଁ ?

ଜଗନ୍ନାଥ - ହଁ ଏହି ପୁରୁଷୋତ୍ତମ ଦେବ ନାମଧାରୀ ଜଣେ ଓଡ଼ିଆ ଆମର ପ୍ରଧାନ ସେବକ ଥିଲା

ବଳଭଦ୍ର - ଯାହାପାଇଁ ଆମକୁ କାଞ୍ଚିଯାଇ ଯୁଦ୍ଧ କରିବାକୁ ପଡ଼ିଥିଲା

ଜଗନ୍ନାଥ - ଓଡ଼ିଆ ଜାତିଟା ଶେଷରେ ଆମକୁ ବିକି ତାର ଗୁଜୁରାଣ ମେଣ୍ଟାଇବାକୁ ବସିଛି

ସୁଭଦ୍ରା - ଯେଉଁ ମାଟିରେ ଜୀବନ ବିନିମୟରେ ଜଗନ୍ନାଥଙ୍କୁ ରକ୍ଷା କରାଯାଉଥିଲା

ବଳଭଦ୍ର - ସେଇଠି ସାମାନ୍ୟ ସୁଖ ପାଇଁ ଠାକୁରଙ୍କୁ ବିକ୍ରୀ କରାଯାଉଛି

ସୁଭଦ୍ରା - ଓଡ଼ିଆର ଏକି ଅଧୋଗତି ହେଲା ଭାଇନା

ବଳଭଦ୍ର - ନା, ଆମେ ଆଉ ବରଦାସ୍ତ କରିବୁନି

ସୁଭଦ୍ରା - ଏହାର ପ୍ରତିକାର କର ଭାଇନା

ବଳଭଦ୍ର - ତୋର ସୁଦର୍ଶନ ଘୂରୁ ତ ନଘୂରୁ ମୁଁ ଏଇ ମୁହୂର୍ତ୍ତରେ ଲଂଗଳ ସ୍ୱନରେ ଏ ଓଡ଼ିଆଙ୍କୁ ଏ ମଣିଷ ଜାତିକୁ ଧ୍ୱଂସ କରିଦେବି ।

ଜଗନ୍ନାଥ - ଏହାଦ୍ୱାରା ଦାସିଆ ବି ତ ମରିବ, ଏବଂ ଦାସିଆ ପରି ଅନେକ ଭକ୍ତ ତ ଏ ଓଡ଼ିଶାରେ ଅଛନ୍ତି, ସେମାନଙ୍କୁ ରକ୍ଷା କରିବା ତ ଆମ ଦାୟିତ୍ୱ ।

ବଳଭଦ୍ର - ନିଜେ ତ ବିକ୍ରୀ ହୋଇଗଲୁ, ସେମାନଙ୍କୁ ଆଉ ରକ୍ଷା କରିବୁ କେମିତି ?

ସୁଭଦ୍ରା - ତମର କଳ୍କୀ ଅବତାର କଣ ପ୍ରକଟ କରିବନି ?

ଜଗନ୍ନାଥ - ସମୟ ଆସିଲେ ତାହା ଅବଶ୍ୟ ଘଟିବ

ବଳଭଦ୍ର - ମୁଁ ସମୟକୁ ଅପେକ୍ଷା କରି ପାରିବିନି

ସୁଭଦ୍ରା - ତମେ ବଡ଼ପଣ୍ଡାଙ୍କୁ ସ୍ୱପ୍ନାଦେଶ ଦିଅ ।

ଜଗନ୍ନାଥ - ଅର୍ଥ ମୋହରେ ସେ ମତ୍ତ ହୋଇ ଉଠିଛି ଭାଇ ତାର ବୈଦିକ ସଂସ୍କାର ସବୁ ନଷ୍ଟଭ୍ରଷ୍ଟ ହୋଇଯାଇଛି, ଆମ ସ୍ୱପ୍ନାଦେଶକୁ ସେ ମାନିବାକୁ ବାଧ ହେବନି

ସୁଭଦ୍ରା - ତାହେଲେ ଏବେ କଣ କରାଯିବ ?

ଜଗନ୍ନାଥ - ଆମକୁ ଓଡ଼ିଆ ବନିବାକୁ ପଡ଼ିବ, ଓଡ଼ିଆମାନଙ୍କ ଭିତରେ ରହି ଓଡ଼ିଆ ଜାତିକୁ ଉଦ୍ଧାର କରିବାକୁ ପଡ଼ିବ

ବଳଭଦ୍ର - କେମିତି ?

ଜଗନ୍ନାଥ - ଆମକୁ ଏବେ ଏ ମନ୍ଦିର ତ୍ୟାଗ କରିବାକୁ ପଡ଼ିବ କେବଳ ମନ୍ଦିର ଭିତରେ ଫୁଲ ଚନ୍ଦନ ଲଗେଇ ବସି ରହିଲେ ଜଗତର କଲ୍ୟାଣ ହୋଇପାରିବନି । ଜଗତର କଲ୍ୟାଣ ପାଇଁ ଆମକୁ ଜଗତ ଭିତରକୁ ଯିବାକୁ ପଡ଼ିବ ସାଧାରଣ ଲୋକଙ୍କ ମେଳରେ ରହି ସତ୍ୟ ଧର୍ମର ପୁନଃ ପ୍ରତିଷ୍ଠା କରିବାକୁ ପଡ଼ିବ ।

ସୁଭଦ୍ରା - ଅବଶ୍ୟ

ବଳଭଦ୍ର - ହେଲେ ଆମକୁ କଣ କରିବାକୁ ହେବ ?

ଜଗନ୍ନାଥ - ଭାଇ ଆମ ମୂର୍ତ୍ତି ଗଠନ ମୂଳରେ ଗୁଣ୍ଡିଚାଙ୍କ ଭୂମିକା ମନେଥିବ ।

ବଳଭଦ୍ର - ହଁ ତାଙ୍କରି ପାଇଁ ତ ଆମେ ଦରଗଢ଼ା

ସୁଭଦ୍ରା - ସେଥିପାଇଁ ତ ଓଡ଼ିଶାର ଘରେ ଘରେ ଗୋଟେକଥା ବେଶ ଲୋକପ୍ରିୟ

ବଳଭଦ୍ର - ମାଇପି ବୁଦ୍ଧିରେ ଜଗନ୍ନାଥ ମହାପ୍ରଭୋ ଖଣ୍ଡିଆ

ଜଗନ୍ନାଥ - ଏକଦମ୍ ସତକଥା । ସ୍ତ୍ରୀ ଲୋକ ବୁଦ୍ଧିରେ ଆମେ ଯେତେବେଳେ ଖଣ୍ଡିଆ ଦରଗଢ଼ା ହୋଇଗଲୁ । ସେହି ସ୍ତ୍ରୀ ଲୋକ ଚାହିଁଲେ ଆମେ ପୂର୍ଣ୍ଣାଂଗ ହୋଇପାରିବା । ତେଣୁ ସ୍ତ୍ରୀ ଲୋକଟି ନିର୍ମଳ ନହେଲେ, ତ୍ୟାଗୀ ନ ହେଲେ ସଚ୍ଚରିତ୍ରା ନହେଲେ କୌଣସି ଗୃହ, ଦେଶଜାତି ପୂର୍ଣ୍ଣାଂଗ ହୋଇପାରିବନି । ତେଣୁ ଆସ ଭାଇ ଆମେ ଏ ଦୁନିଆ ଭିତରେ ମିଶିଯାଇ ଦୁନିଆର ଯତ୍ନନେବା ।

ଜଗବନ୍ଧୁ ପରି ଜଣେ ସାମନ୍ତ..... ଅଂଧାର



## ପଞ୍ଚମ ଦୃଶ୍ୟ

(ବାମ ଅଂଚଳ, ମନ୍ଦିର ବାହାରେ ବ୍ରହ୍ମାନା
ବାହାରୁଥାନ୍ତି ଦାସିଆ ଅଟକାଉଥାଏ)

ବ୍ରହ୍ମାନା - ତୁ ମୋତେ ଆଉ ବାଧ କରନା ଦାସିଆ, ମୁଁ ଆଉ ଏଠି ମୁହୂର୍ତ୍ତେବି ରହିବିନି, ଖାଲି ତୋତେ ଦେଖାନକଲେ ତୁ କାନ୍ଦିବୁ ଆଉ ଜଗାଠୁ ମେଲାଣି ନନେଲେ ମୁଁ କାନ୍ଦିବି ବାସ୍ ସେକାମ ତ ସରିଗଲା, ମୋତେ ଏବେ ବିଦାୟ ଦେ।

ଦାସିଆ - ନା ଗୋସେଇଁ, ନା, ତମେ ମୋତେ ଛାଡ଼ି ଯାଇପାରିବନି।

ବ୍ରହ୍ମାନା - ମୋତେ ଆଉ ମାୟାରେ ପକାନା ଦାସିଆ, ମୋତେ ଛାଡ଼, ମୁଁ ଯିବି।

ଦାସିଆ - ଠିକ୍ ଅଛି ମୁଁ ବି ତମ ସାଂଗରେ ଯିବି, ଘର ଛାଡ଼ିଛି ତମରି ଭରସାରେ ତମେ ଛାଡ଼ିଦେଲେ ମୁଁ ବଂଚିବି କେମିତି।

ବ୍ରହ୍ମାନା - ମୁଁ ତୋତେ ନେଇ ଯାଆନ୍ତି, ମୁଁ ତ କୁଆଡ଼େ ଯିବି କୋଉଠି ରହିବି କଣ ଖାଇବି ତାର ଠିକଣା ନାହିଁ, ତୁ ମୋ ସହିତ କାହିଁକି ଦୁଃଖ ପାଇବୁ।

ଦାସିଆ - ତମ ସହିତ ମୋର ସୁଖଥାଏ ସିନା ଗୋସେଇଁ ତମ ବିନା ତ ମୋର ଦୁଃଖ। ତେଣୁ ମୋତେ ମନା କରନି।

ବ୍ରହ୍ମାନା - ଦାସିଆ, ମୋ ଭାଇଟା ପରା, ମୋର ଗୋଟେ କଥା ମାନିବୁ ?

ଦାସିଆ - ଗୋସେଇଁ ମୋତେ ଭାଇକରିଦେଲ ? ମୋତେ ଭାଇ କରିଦେଇ ସବୁ ସୁଖ ଦେଇଗଲ, ମୋତେ ଆଶୀର୍ବାଦ କର ଗୋସେଇଁ ମୁଁ ତମ ଲକ୍ଷ୍ମଣ ଭାଇ ହୁଏ । ଏଥର କୁହ ଗୋଟେ କାହିଁକି, ଯାହା କହିବ ତାହା କରିବି ।

ବ୍ରହ୍ମାନା - ତୁ ତ ଜାଣୁ ଜଗନ୍ନାଥ ଆମ ପ୍ରାଣ, ତୁ ନରହିଲେ ତା କଥା ଏଠି ବୁଝିବ କିଏ । ଏ ମନ୍ଦିର ମାଟିରେ ମିଶିଯିବ, ସିନା, ମୁଁ ଆସିବାଯାଏ ତୁ ଏ ମନ୍ଦିର ଜଗି ପଡ଼ିଥା ।

ଦାସିଆ - ତମେ ଜିତିଗଲ ଗୋସେଇଁ । ଜଗା ନାଁରେ ତମେ ମୋତେ ବାନ୍ଧିଦେଲ । ହଉ ହେଲା ମୁଁ ମୋ ଜୀବନ ଦେଇ ତମ କଥା ରଖବି । ହେଲେ ତମେ ମୋ ମୁଣ୍ଡ ଛୁଇଁ ରାଣ ଦେଇ ଯାଅ, ଯୋଉଠି ଥାଅ ପଛକେ ରଥଯାତ୍ରାକୁ ନିଶ୍ଚୟ ଆସିବ ।

ବ୍ରହ୍ମାନା - (କାନ୍ଦିପକେଇ) ଦାସିଆରେ, ଜଗନ୍ନାଥଙ୍କ କୃପାହେଲେ ମୁଁ ତୋ କଥା ନିଶ୍ଚୟ ରଖିବି ।

ଦାସିଆ - (କାନ୍ଦିକାନ୍ଦି) ଗୋସେଇଁ ଏଠି ତ ଦିଅଙ୍କ ମଣ୍ଡପ, ତମକୁ ଜୁହାର ହୋଇପାରିବିନି ଟିକିଏ ତଳକୁ ଓହ୍ଲେଇବନି ?

ବ୍ରହ୍ମାନା - ଆରେ ତୋ ସ୍ଥାନ ଆଜିଠୁ (ଗଳାରେ ମିଳେଇ ଦିଅନ୍ତି କାନ୍ଦନ୍ତି ଏହି ସମୟରେ ଜଗନ୍ନାଥ ଆସନ୍ତି ଅନ୍ୟ ପ୍ରତୀକାତ୍ମକ ବେଶରେ ଠେଙ୍ଗାଟେ ଧରି)

ଜଗନ୍ନାଥ - ଆଜ୍ଞା କହିପାରିବେକି ଏଠି ବ୍ରହ୍ମାନନ୍ଦ ପଣ୍ଡା କିଏ ?

ବ୍ରହ୍ମାନା - କଣ ହେଲା, ମୁଁ ଆଜ୍ଞା ବ୍ରହ୍ମାନନ୍ଦ ପଣ୍ଡା

ଜଗନ୍ନାଥ - ଆପଣଙ୍କୁ ପୁରୀ ମୁକ୍ତି ମଣ୍ଡପରୁ ଆମନ୍ତ୍ରଣ ଆସିଛି ମୋ ସହିତ ଯିବାକୁ ପଡ଼ିବ

ବ୍ରହ୍ମାନା - ପୁରୀ ମୁକ୍ତି ମଣ୍ଡପ ? ହେ ପ୍ରଭୋ ଜଗନ୍ନାଥ

ଜଗନ୍ନାଥ - ଆଉ ଦାସିଆ ଦାସ ?

ଦାସିଆ - ମୁଁ ଆଜ୍ଞା ଏଇ ଅଧମ ପାପୀ ଦାସିଆ ଦାସ୍ ।

ଜଗନ୍ନାଥ - ତମକୁ ମଣ୍ଡପରୁ ଏ ଠେଙ୍ଗାଟି ପ୍ରଦାନ କରାଯାଇଛି ତମେ ଏଇଠି ଥାଇ ଏ ଠେଙ୍ଗାଟି ଧରି ମନ୍ଦିର ଜଗିବ । (ଠେଙ୍ଗା ଦେଲେ)

ଦାସିଆ - ଗୋସେଇଁ

ବ୍ରହ୍ମାନା - ତୁ ଠେଙ୍ଗାଧରି ଏଇଠି ଏମାନଙ୍କୁ ଜଗିଥା ମୁଁ ଜଗାକୁ ସବୁ କଥା କହି ନିଶ୍ଚୟ ଫେରିବି

ଦାସିଆ - ଯାଅ ଗୋସେଇଁ ମୋର ଆଉ ଚିନ୍ତା ନାହିଁ

ବ୍ରହ୍ମାନା - ଚାଲ ଭାଇ

ଜଗନ୍ନାଥ - ଆସନ୍ତୁ (ଯାଆନ୍ତି, ଦାସିଆ କିଛି ସମୟ ଠିଆ ହୋଇଛି ଠେଙ୍ଗାଧରି ଦେଖନ୍ତି, ତାପରେ ଛାତିଫୁଲେଇ ଛିଡ଼ା ହୁଅନ୍ତି)

ଦାସିଆ - ଏଥର ଦେଖିବି ମୋ ଜଗା ନୀତିରେ ଟିକିଏ ଅବହେଳା ହେଲେ ଏ ଠେଙ୍ଗାରେ ସାବାଡ଼ କରିଦେବି । ଜଗା ମୋ ପାଇଁ ଠେଙ୍ଗା ପଠେଇଛି ଏ ଜଗାର ଠେଙ୍ଗା । ଏଠୁ ସବୁ ଅନୀତି ପାପଦୁରାଚାରକୁ ଏଇ ଠେଙ୍ଗାରେ ସାବାଡ଼ କରିଦେବି । ଜୟ ଜଗନ୍ନାଥ



## ଷଷ୍ଠ ଦୃଶ୍ୟ

ରାତ୍ରୀ ପ୍ରାୟ ତୃତୀୟ ପ୍ରହର । ଚାରିଆଡ଼ ଶୂନ୍‌ସାନ ଠେଙ୍ଗା ମୁଣ୍ଡତଳେ ରଖି ଦାସିଆ ଶୋଇଥାଏ । ଟର୍ଚ୍ଚଧରି ଛପିଛପି ଆସନ୍ତି ପୁରୁଷୋତ୍ତମ ଓ ଅମର । ଦେଖନ୍ତି, ଦାସିଆ ଶୋଇଥବା ଦେଖି ଖୁସି ହୁଅନ୍ତି ।

ପୁରୁଷୋ - ଦାସିଆ ଭାଂଗ ନିଶାରେ ଶୋଇଯାଇଛି, ଆପଣ ମୋତେ ଟର୍ଚ୍ଚ ଦେଖେଇବେ, ମୁଁ ଗୋଟେ ପରେ ଗୋଟେ ମୂର୍ତ୍ତି ବାହାର କରିଦେବି

ଅମର - ହଉ ହେଲା, ମୁଁ ଟର୍ଚ୍ଚ ଦେଖଉଛି ପ୍ରଥମେ ଚାବି ଖୋଲନ୍ତୁ ।

ପୁରୁଷୋ - ହେଲା ଖବରଦାର ଦାସିଆକୁ ସାବଧାନ (ଅମର ଆଲୋକ ଦେଖାନ୍ତି ପୁରୁଷୋତ୍ତମ ଚାବି ଖୋଲନ୍ତି)

ଅମର - ଏଇ ଟର୍ଚ୍ଚ ନିଅନ୍ତୁ ଆଉ ବେଗ୍ ।

ପୁରୁଷୋ - ନା ଟର୍ଚ୍ଚ ମାରନ୍ତୁ, ବେଗ୍‌ଗୁଡ଼ା ମୋତେ ଦିଅନ୍ତୁ ।

ଅମର - ଠିକ୍ ଅଛି, ଦିଅନ୍ତୁ, ମୁଁ ଏଇଠି ଅଛି । (ବେଗ୍‌ନେଇ ଭିତରକୁ ଯାଆନ୍ତି ପୁରୁଷୋତ୍ତମ ଟର୍ଚ୍ଚ ଦେଖଉଥା'ନ୍ତି ଅମର । ଶବ୍ଦ ହୁଏ । ଦାସିଆର ନିଦ ଭାଂଗିଯାଏ)

ପୁରୁଷୋ - ଅମର ବାବୁ ଅମରବାବୁ । ଗର୍ଭଗୃହ ଶୂନ୍ୟ, ଠାକୁର ନାହାନ୍ତି

ଅମର - କଣ କହିଲେ, ଠାକୁର ନାହାନ୍ତି ?
ଦାସିଆ - କିଏ, କିଏ, ମନ୍ଦିର ଭିତରେ କିଏ ?
ଅମର - ଏ (ଦୌଡ଼ି ପଳାଇବାକୁ ଉଦ୍ୟମ କରେ)
ଦାସିଆ - ଚୋର ଚୋର କିଏ ? (ଆଲୋକ ଆସେ)
ପୁରୁଷୋ - ନାଇଁ କକେଇ (ଯାଇ ନପାରି ଦାସିଆ ହାତରେ ଧରା ପଡି ଯାଆନ୍ତି)
ଦାସିଆ - କିଏ ସାନ ଗୋସେଇଁ, ଏତେ ରାତିରେ !
ପୁରୁଷୋ - ନାଇଁ ଏମିତି.....
ଦାସିଆ - କଣ, କଥା କଣ ? ସତ କୁହ, ଏତେ ରାତିରେ ମନ୍ଦିରରେ କି କାମ ?
ପୁରୁଷୋ - ଠାକୁରଙ୍କୁ ନେଲା କିଏ ? ଗର୍ଭଗୃହରେ ଠାକୁର ନାହାନ୍ତି ?
ଦାସିଆ - ଠାକୁରଙ୍କୁ ନେଲା କିଏ ? ଠାକୁର ନାହାନ୍ତି ? ଠାକୁର ମନ୍ଦିର ଛାଡ଼ି ଚାଲିଗଲେ ? ଗୋସେଇଁ ଯାଇଥିଲେ, ମୋ ପାଇଁ ଠେଙ୍ଗାଟେ ପଠେଇଦେଇ ଠାକୁର କଣ ଚାଲିଗଲେ ? ତାହଲେ କଣ କଳିଯୁଗ ଶେଷ ହୋଇଗଲା ?
ପୁରୁଷୋ - ଠାକୁର କେମିତି ଗଲେ ?
ଦାସିଆ - ତମେ ପାପ କଲ, ଅନୀତି କଲ, ଠାକୁର ସହିପାରିଲେନି ମନ୍ଦିର ଛାଡ଼ି ଚାଲିଗଲେ।
ପୁରୁଷୋ - ଭଲାକଥା, ଠାକୁରଙ୍କର କଣ ହାତଗୋଡ଼ ଅଛି, ଚାବି ତ ମୋ ପାଖରେ ଠାକୁର ଗଲେ କେମିତି ? ତାଙ୍କୁ ନେଲା କିଏ ?
ଦାସିଆ - ହଁ ସତ କଥାତ, ଠାକୁରଙ୍କର ତ ହାତ ଗୋଡ଼ ନାହିଁ, ପୁଣି ତମେ ତମେ ତ ତାଙ୍କୁ ଚାବି ପକେଇ ରଖିଛ, ଠାକୁର ଗଲେ କେମିତି ? ଆଉ ତମେ ଏତେ ରାତିରେ ମନ୍ଦିର ଚାବି ଖୋଲିଲ କାହିଁକି ? ତା ମାନେ ତମେହିଁ କିଛି କରିଛ ? ତମେ ଠାକୁରଙ୍କୁ କୋଉଠି ବିକି ଦେଲ ?
ପୁରୁଷୋ - କଣ କହିଲ, ମୁଁ ଠାକୁରଙ୍କୁ ବିକି ଦେଇଛି।

ଦାସିଆ - ହଁ, ନବିକିଛ ତ ଠାକୁର ଗଲେ କୁଆଡ଼େ ?

ପୁରୁଷୋ - ସେଥିରୁ ତମର କଣ ଗଲା ?

ଦାସିଆ - ଏ ଦାସିଆକୁ ନାଲିଆଖି ଦେଖାଅନା, ଏ ଠେଙ୍ଗାକୁ ଦେଖିଛ ତ ଠାକୁରଙ୍କ ନାଆଁରେ ତମ ଗୋଡ଼ହାତ ଭାଂଗିଦେବି ।

ପୁରୁଷୋ - ଭାଂଗିଲ ଦେଖି

ଦାସିଆ - ଏତେବେଳକୁ କଣ ନାଇଁ କଣ କରି ସାରନ୍ତିଣି, ଖାଲି ବ୍ରହ୍ମାନାଙ୍କ ପୁଅ ବୋଲି

ପୁରୁଷୋ - କଣ କରିବୁ କର (ଯାଉଥାଏ)

ଦାସିଆ - ଏ ଯାଉଛ କୁଆଡ଼େ ? ଠାକୁରଙ୍କୁ ରଖ ତାପରେ ଯାଅ ।

ପୁରୁଷୋ - ଏ ପାଗଳା ଛାଡ଼ ଛାଡ଼ କହୁଛି ।

ଦାସିଆ - ଛାଡ଼ିଦେବି ? (ଧରି ନିଏ)

ପୁରୁଷୋ - କଣ କହିଲୁ ଛାଡ଼ିବୁନି ? (ଛଡ଼େଇ ହୁଏ)

ଦାସିଆ - ଏଇଠି ଏଇ ଦଉଡ଼ିରେ ବାନ୍ଧି ପକେଇବି, ରାତିପାହୁ, ଠାକୁରଙ୍କୁ ରତ୍ନ ମଣ୍ଡପରେ ଦେଖିଲେ ଛାଡ଼ିବି

ପୁରୁଷୋ - ଛାଡ଼ଛାଡ଼

ଦାସିଆ - ଦାସିଆକୁ ବୁଢ଼ା ଭାବିଛୁ । ଆଉ ସେ ଟୋକାଟା ଗଲା କୁଆଡ଼େ । (ଏହି ସମୟରେ ଅମର ଖସିଯାଏ । ଏ କିଏ ? କିଏ ? ଏ.. ଏ.. (ଗୋଡ଼ାଇ ଯାଏ ଅମର ଖସିଯାଏ ଅଂଧାର)

(ଦକ୍ଷିଣ ଅଂଚଳକୁ ଆଲୋକ ଆସେ । ରାତି ପାହିଯାଏ । ପଦ୍ମା ଆଶା ଓ ଆଶଙ୍କାରେ ଏପଟ ସେପଟ ହେଉଥାନ୍ତି- ଧଇଁ ସଇଁ ହୋଇ ଦୌଡି ଆସନ୍ତି ଅମର)

ପଦ୍ମା - କଣ ହେଲା ଅମର ବାବୁ ? ରାତି ପାହିଗଲା ଅଥଚ....

ଅମର - ଅବସ୍ଥା ଏକବାରେ ଅସମ୍ଭାଳ-

ପଦ୍ମା - କାହିଁକି କଣ ହୋଇଛି ?

ଅମର - ଆମ ଆଗରୁ ମୂର୍ତ୍ତି ଗୁଡାକୁ କିଏ ଚୋରି କରି ନେଇଛି । ପଣ୍ଡା ବାବୁଙ୍କୁ ସନ୍ଦେହ କରି ଦାସିଆ ପାଗଳା ତାଙ୍କୁ ବାନ୍ଧି ପକେଇଛି । ମୋତେ ମଧ୍ୟ ଧରିବାକୁ ଗୋଡେଇଛି ।

ପଦ୍ମା - ଏ କଣ କହୁଛନ୍ତି ଆପଣ ?

ଅମର - ଯାହା କହୁଛି ଏକଦମ୍ ସତ (ଏହି ସମୟରେ ଦାସିଆର ପାଟି ଶୁଭେ)

ଦାସିଆ - (ବାହାରୁ) କାହିଁଗଲା କାହିଁଗଲା ସେ ପରଦେଶୀ ଟୋକା

ଅମର - ଏଇ ସେ ଆସିଗଲା, ମୋତେ ଏବେ ବାଡେଇ ପକେଇବ (ଭିତରକୁ ଯାଆନ୍ତି)

ପଦ୍ମା - ଆରେ ଆରେ (ଦାସିଆ ଆସେ)

ଦାସିଆ - କାହିଁ, କୋଉଠି ଅଛି ସେ ପରଦେଶୀ ?

ପଦ୍ମା - ପରଦେଶୀ ? କୋଉ ପରଦେଶୀ ?

ଦାସିଆ - ଯେ; ଆହୁରୀ ପଚାରୁଛ ? ଯାହାଙ୍କ ହାତରେ ଠାକୁରଙ୍କ ଫଟୋ ଦେଇଛ ? ଠାକୁରଙ୍କ ପୋଥି ପୁରାଣ ବିକିଛ ଏବଂ ଶେଷରେ ଠାକୁରଙ୍କୁ ବିକି ଦେଇଛ, ତାକୁ ଏ ଠେଙ୍ଗାରେ ପିଟି ପିଟି ଶେଷ କରିଦେବି । କୁହ ସେ କୋଉଠି ଅଛି ?

ପଦ୍ମା - ଏଠି କେହି ନାହାନ୍ତି

ଦାସିଆ - ଯେ ଠେଙ୍ଗାକୁ ଦେଖୁଛନା ?

ପଦ୍ମା - କହିଲି ପରା ଏଠି କେହି ନାହାନ୍ତି

ଦାସିଆ - କେହି ନାହାନ୍ତି ? ହଉ ଠିକ୍ ଅଛି । ସାନ ଗୋସେଇଁଙ୍କୁତ ବାନ୍ଧିକି ରଖୁଛି, ଠାକୁରଙ୍କୁ ଆଣ, ତାପରେ ତାଙ୍କୁ ଛାଡିବି (ଯାଏ)

ପଦ୍ମା - ଇଏ ବଡ ବିଷମ ସମସ୍ୟା, ମୁଁ ଏବଏ କରିବି କଣ (ଅମର ଆସନ୍ତି) ଅମର ବାବୁ ମୁଁ ଏବଏ କଣ କରିବି ?

ଅମର - ମୁଁ ତ କଣ କରିବି, ଚିନ୍ତା କରି ପାରୁନି

ପଦ୍ମା - ଆପଣଙ୍କ ବନ୍ଧୁଙ୍କୁ ଟିକିଏ ସାହାଯ୍ୟ କରନ୍ତୁ

ଅମର - ମୋତେ କିଏ ସାହାଯ୍ୟ କରିବ ମୁଁ ଆଗ ଖୋଜେ (ଯାଉଥିଲେ)

ପଦ୍ମା - ପ୍ଲିଜ୍ ଅମର ବାବୁ (ହାତ ଧରି ପକାଏ, ଅମର ହାତ ଝାଡି ଦେଇ ଯାଏ)

(ଅଂଧାର ହୋଇ ପୁଣି ଆଲୋକ ଆସେ । ପୁରୁଷୋତ୍ତମ ବନ୍ଧା ହୋଇଥାଏ, ଦାସିଆ ଠେଙ୍ଗାଧରି ଥାଆନ୍ତି ପଦ୍ମା ପହଞ୍ଚନ୍ତି)

ପଦ୍ମା - କକେଇ, ମୁଁ ତମକୁ ହାତ ଯୋଡୁଛି କକେଇ ତାଙ୍କୁ ଛାଡ଼ିଦିଅ ସେ କିଛି ଜାଣନ୍ତିନି ।

ଦାସିଆ - ସେ ଜାଣନ୍ତିନି ଖାଲି କହିଦେଲେ ହବ ? ଚାବିକାଠି ତ ତାଙ୍କପାଖରେ ଥିଲା ଠାକୁର ଗଲେ କୁଆଡ଼େ ?

ପଦ୍ମା - କିଏ ହୁଏତ ବିଶ୍ୱାସଘାତକତା କରିଥିବ

ଦାସିଆ - ତାଙ୍କଠୁ ବଳି ବିଶ୍ୱାସଘାତକ ଆଉ ଏଠି ଅଛି କିଏ ? ଯିଏ ତାର ବାପକୁ ଜିଅନ୍ତା ଜଗନ୍ନାଥଙ୍କୁ ଧକ୍‌କା ଦେଇ ଘରୁ ବାହାର କରିଦେଇ ପାରେ ତା ଆଗରେ ଏ କାଠ ପାଷାଣର ଠାକୁର ଅବା କେତେ ବଡ଼ ।

ପଦ୍ମା - କକେଇ ଏଇ ଥରକ ତାଙ୍କୁ ଛାଡ଼ିଦିଅ

ଦାସିଆ - ନା ନା ନା ଯେ ପର୍ଯ୍ୟନ୍ତ ଠାକୁର ନମିଳିବେ ନା ମୁଁ ଅନ୍ନଜଳ ସ୍ପର୍ଶ କରିବି ନା ତାଙ୍କୁ ଅନ୍ନଜଳ ସ୍ପର୍ଶ କରେଇ ଦେବି । ଯାଆ ଠାକୁରଙ୍କୁ ଖୋଜିଆଣ । ଠାକୁରଙ୍କୁ ଖୋଜିଆଣିଲେ ମୁଁ ତମ କଥା ରଖିବି । (ପାଟିଶୁଭେ) ଏଇ ଲୋକମାନେ ଆସିଗଲେଣି, ଏଥର ଆଉ କିଏ ରଖିବ ?

(ଆସନ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପବ୍ଲିକ୍ ବେଶରେ)

ଜଗନ୍ନାଥ - କଣ କହିଲ ମନ୍ଦିରରେ ଠାକୁର ନାହାନ୍ତି ?

ବଳଭଦ୍ର - ଆମ ଠାକୁରଙ୍କୁ ନେଲା କିଏ ?

ସୁଭଦ୍ରା - ଆମ ଠାକୁର ଗଲେ କୁଆଡେ ?

ଦାସିଆ - ଠାକୁରଙ୍କର କଣ ହାତ ଗୋଡ ଅଛିଯେ କୁଆଡେ ଚାଲିଯିବେ

ଜଗନ୍ନାଥ - ଠାକୁରଙ୍କୁ ତ ଏମାନେ ଚାବି ପକାଇ ରଖିଥିଲେ

ବଳଭଦ୍ର - ଏଇମାନେ ଠାକୁରଙ୍କୁ ନେଇଛନ୍ତି

ଦାସିଆ - ସେଇଥି ପାଇଁ ତ ମୁଁ ତାଙ୍କୁ ବାନ୍ଧି ରଖିଛି, ଠାକୁରଙ୍କୁ ପାଇଲେ ତାଙ୍କୁ ଛାଡିବି

ପୁରୁଷୋ - ମୋତେ ବିଶ୍ୱାସ କର

ଦାସିଆ - ଚୁପ୍ ! ତମ ପାଖରେ ତ ଚାବି କାଠି ଥିଲା, ଠାକୁରଙ୍କୁ ଆଉ ନବ କିଏ ?

ଅନ୍ୟମାନେ- ତମେ ନେଇଛ ତମେ (ଆଗକୁ ମାଡି ଯାଉଥିଲେ)

ପଦ୍ମା - ଶୁଣନ୍ତୁ ଶୁଣନ୍ତୁ

ଜଗନ୍ନାଥ - ଆମେ କିଛି ଶୁଣିବୁନି

ବଳଭଦ୍ର - ଆଗ ଠାକୁରଙ୍କୁ ଆଣ ତାପରେ ଯୋଉ କଥା

ସୁଭଦ୍ରା - କୁହ ଠାକୁରଙ୍କୁ କୋଉଠି ରଖିଛ ?

ପୁରୁଷୋ - ମୁଁ ସତ କହୁଛି ମୁଁ ଜାଣିନି ଠାକୁର କୁଆଡେ ଗଲେ

ଦାସିଆ - ନା ଏମାନେ ଏମିତି ମାନିବେନି

ଜଗନ୍ନାଥ - ଚାଲ ତାଙ୍କ ଘର ଜାଳିଦବା

ବଳଭଦ୍ର - ତାଙ୍କୁ ଜାଳିଦବା

ସୁଭଦ୍ରା - ହଁ ହଁ ଜଗନ୍ନାଥ ପାଇଁ ଆମେ ସବୁ କିଛି କରି ପାରିବା

ସମସ୍ତେ - ହଁ ଚାଲ, ଜୟ ଜଗନ୍ନାଥ

ପଦ୍ମା - ଆଜ୍ଞା ଆଜ୍ଞା ଟିକିଏ ଶୁଣନ୍ତୁ

ପୁରୁଷୋ - ଆପଣମାନେ ତ ମୋତେ ବାନ୍ଧି ରଖିଛନ୍ତି, ମୁଁ ଏଠୁ ମୁକୁଳିଲେ ସିନା ଠାକୁରଙ୍କୁ ଖୋଜିବି

ଦାସିଆ - ହଉ ଠିକ ଅଛି, ସାନ ଗୋସେଇଁଙ୍କୁ ତ ମୁଁ ବାନ୍ଧି ରଖିଛି ବହୁମା, ତମେ ଯଦି ଭଲ ଚାହୁଁଛ ଠାକୁରଙ୍କୁ ଖୋଜି ଆଣ, ଠାକୁରଙ୍କୁ ଦେଖିଲେ ସାନ ଗୋସେଇଁଙ୍କୁ ଛାଡିବି ।

ଅନ୍ୟମାନେ- ହଁ ହଁ ଯାଅ ଯାଅ

ପୁରୁଷୋ - ପଦ୍ମା

ପଦ୍ମା - ଠିକଅଛି, ମୁଁ ଯାଉଛି

ଦାସିଆ - ଯାଅ, ସତୀ ଯଦି ସ୍ୱାମୀଙ୍କୁ ରକ୍ଷାକର (ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପରସ୍ପରଙ୍କୁ ଚାହିଁ ହସନ୍ତି)

(Right zone ରେ ପଦ୍ମା ଓ ଜଗନ୍ନାଥ)

ପଦ୍ମା - ବାପା, ମୁଁ ବହୁତ ବଡ଼ ବିପଦରେ ପଡ଼ିଛି ବାପା

ଜଗନ୍ନାଥ - ଯୋଉ ଶ୍ୱଶୁର ମୋ ଗୋଡ଼ହାତ ଧରି ତୋତେ ବୋହୂ କରିଥିଲା ସେହି ଶ୍ୱଶୁରକୁ ଧକ୍କା ଦେଇ ଘରୁ କାଢ଼ିଦେଲ, ବିପଦରେ ତମେ ପଡ଼ିବନି ତ ଆଉ ପଡ଼ିବ କିଏ ।

ପଦ୍ମା - ନା ବାପା

ଜଗନ୍ନାଥ - ବାପ ଝିଅ ଜନ୍ମ କରେ ପରଘର ପାଇଁ, ପରଘରକୁ ସ୍ୱର୍ଗରେ ପରିଣତ କରିବାପାଇଁ, ପରଘରକୁ ଭାଂଗିବା ପାଇଁ ନୁହେଁ, ଆଉ ମୁଁ ସେ ବାପ ନୁହେଁ ଯେ ତୋତେ ଶିଖେଇ ବୁଝେଇ ତୋ ଘର ଭାଂଗି ମୋ ଘର ଗଢ଼ିବି ।

ପଦ୍ମା - ବାପା, ପବ୍ଲିକ୍ ମୋତେ ଛାଡିବେନି

ବାପା - ମୁଁ କଣ କରିବି, ଯା ଯା ଯା ଓକିଲଙ୍କ ପାଖକୁ ଯା, ତାଙ୍କୁ ପରାମର୍ଶ କର ।

ପଦ୍ମା - ବାପା ? (ଜଗନ୍ନାଥଙ୍କ ଭଙ୍ଗୀ ପ୍ରଦର୍ଶନ କରନ୍ତି, ପଦ୍ମା ଡରି ଡରି ଅନ୍ୟ ଯୋନ୍‌କୁ ଯାଏ)

(ପଦ୍ମା ଯାଆନ୍ତି Left zoneକୁ ଆଲୋକ ଆସେ ଓକିଲ (ବଳଭଦ୍ର) ସହ ପଦ୍ମା)

ବଳଭଦ୍ର - ଅବଶ୍ୟ, ମୁଁ ମାନୁଛି ଆଇନଗତ ସହାୟତା ଯୋଗାଇ ଦେବା ଆମ କର୍ତ୍ତବ୍ୟ, କିନ୍ତୁ ତମ ପକ୍ଷରେ ଏହା କିପରି ସମ୍ଭବ ? ତମ ପାଖରେ ଚାବିକାଠି ଅଛି ଅଥଚ ଭିତରେ ଦିଅଁ ନାହାନ୍ତି, ତାକୁ ନେଲା କିଏ ? ଏହାର ସ୍ପଷ୍ଟ ଉତ୍ତର ଆଉ କଣ ହୋଇପାରେ ?

ପଦ୍ମା - ସାର ଆପଣ ଚାହିଁଲେ

ବଳଭଦ୍ର - ଅବଶ୍ୟ ଆଗରୁ ଏହା କରି ହେଉଥିଲା ମିଛକୁ ଆଶ୍ରୟକରି ଆଇନର ଦୁରୁପଯୋଗ କରି ଓକିଲମାନେ ବେଶ କିଛି ରୋଜଗାର କରୁଥିଲେ । ଏବେ କିନ୍ତୁ ନା ନା ଏବେପରା ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଦାଣ୍ଡରେ ଘାଟରେ ବୁଲୁଛନ୍ତି ତେଣୁ ଆମେ ଆମ ଆସୋସିଏସନ ସିଦ୍ଧାନ୍ତ କରିଛି, ପଛେ ବାଦାମ ଚୋବେଇବାକୁ ଟଂକାଟେ ନମିଳୁ ଆମେ ଆଇନ୍‌ର ଅପପ୍ରୟୋଗ କରିବୁନି ।

ବଳଭଦ୍ର - ଯାଅ ଯାଅ ଯାହାକୁ ଭୋଟ ଦେଇଥିଲ ତାଙ୍କ ପାଖକୁ ଯାଅ (ବଳଭଦ୍ରଙ୍କ ଭଙ୍ଗୀ ପ୍ରଦର୍ଶନ କରନ୍ତି, ପଦ୍ମା ଡରି ଡରି ଅନ୍ୟ ଯୋନ୍‌କୁ ଯାଏ)

(ଯାଆନ୍ତି, **Right zone** ରେ ଜଗନ୍ନାଥ ଜଣେ ସରପଞ୍ଚ, ପଦ୍ମା)

ଜଗନ୍ନାଥ - ହେଲା, ମୁଁ ମାନିଲି, ମୁଁ ରାଜନେତା ଆପଣମାନଙ୍କ ଭୋଟ ବଳରେ ମୁଁ ଲୋକପ୍ରତିନିଧି, ତଥାପି ରାଜନେତାର ବି ତ ଗୋଟେ ସୀମା ରହିଛି ଆଉ ସୀମା ପାରି ହୋଇ ରାଜନୀତିକ ହସ୍ତକ୍ଷେପ କରିବାଟା ସମ୍ଭବ ନୁହେଁ । ଏବେ ଚାରିଆଡ଼େ ଗୋଟେ ହୁରି ପଡ଼ିଛି କଳିଯୁଗ ଶେଷ ହେବାକୁ ଯାଉଛି । ଠାକୁର ଲୋକଙ୍କ ମେଳରେ ମିଶିଗଲେଣି । ବିଭିନ୍ନ ବେଶରେ ରହି ଲୋକଙ୍କୁ ପରୀକ୍ଷା କରୁଛନ୍ତି ପାପୀ ଧର୍ମୀ ବାଛୁଛନ୍ତି । ତାପରେ ଖଣ୍ଡାଧରି ପାପୀ ସଂହାର କରିବେ ନାନା ଢେର ହେଲାଣି ଆଉ ପାପକରି ହେବନି

ପଦ୍ମା - ଆମେ ଆପଣଙ୍କୁ ଭୋଟ ଦେଇଥିଲୁ ।

ଜଗନ୍ନାଥ - ଭୋଟେ ଦେଲେ ବୋଲି ଆପଣ ଠାକୁରଙ୍କୁ ବିକିଦେବେ ମୁଁ ଆପଣଙ୍କୁ ସାହାଯ୍ୟ କରିବି । ଚୋର ଡକାୟତଙ୍କୁ ସାହାଯ୍ୟ କରି ରାଜନୀତି କରିବାର ସମୟ ସରିଯାଇଛି । ଯାଅ ଯାଅ ପୋଲିସ୍ ପାଖକୁ ଯାଅ **(ଜଗନ୍ନାଥଙ୍କ ଭଙ୍ଗୀ ପ୍ରଦର୍ଶନ କରନ୍ତି, ପଦ୍ମା ଡରି ଡରି ଅନ୍ୟ ଯୋନ୍‌କୁ ଯାଏ)**

**(ଅନ୍ୟ ଏକ ଯୋନ୍‌ରେ ଫୋନ୍ ଧରନ୍ତି ବଳଭଦ୍ର)**

ବଳଭଦ୍ର - ହାଲୋ ପୋଲିସ୍ ଇନ୍‌ସିପେକ୍ଟର ସ୍ପିକିଙ୍ଗ

ପଦ୍ମା - ସାର ନମସ୍କାର, ସାର୍ ମୁଁ ଗୋଟେ ବିପଦରେ ପଡିଯାଇଛି

ବଳଭଦ୍ର - ଜାଣେ

ପଦ୍ମା - ସାର ଯାହା ଚାହିଁବେ, ଲକ୍ଷେ ଦିଲକ୍ଷ ୫ ଲକ୍ଷ ମୁଁ ଦେବି ସାର୍ ।

ବଳଭଦ୍ର - ଆଃ ଧିରେ କହନ୍ତୁ, ଆପଣଙ୍କ ଚାରି ପାଖରେ ଜଗନ୍ନାଥ ଛିଡା ହୋଇଛନ୍ତି

ପଦ୍ମା - ଏଁ ଜଗନ୍ନାଥ !

ବଳବଦ୍ର - ଏ ମାଟି ଗୋଡି ଆକାଶରେ ଜଗନ୍ନାଥ, ମୁଁ ପାରିବିନି । ଆପଣ ଆମ ଏସ୍.ପି.ଙ୍କୁ ଧରନ୍ତୁ ।

ପଦ୍ମା - ଏସ୍.ପି. !

**(ଏସ୍.ପି.ଙ୍କ କ୍ୱାଟର, ପଦ୍ମା ଆସନ୍ତି, ଆସନ୍ତି ସୁଭଦ୍ରା)**

ପଦ୍ମା - ମାଡାମ୍ ନମସ୍କାର, ସାର୍ ନାହାନ୍ତି କି ?

ସୁଭଦ୍ରା - ଏସ୍.ପି. ସାର ନାହାନ୍ତି, ମୁଁ ତାଙ୍କ ସ୍ତ୍ରୀ ?

ପଦ୍ମା - ମାଡାମ୍ ମୁଁ ବଡ଼ ବିପଦରେ ପଡ଼ିଛି ଆଇନ୍ ପ୍ରଶାସନ କେହି ମୋତେ ସହାୟତା କରୁ ନାହାନ୍ତି

ବଳଭଦ୍ର - କଣ ହୋଇଛି କୁହ

ପଦ୍ମା - ମାଡାମ୍ ଜଗନ୍ନାଥ ପାଟଣାରେ ଥିବା ଜଗନ୍ନାଥ ମନ୍ଦିରରୁ

ସୁଭଦ୍ରା - ଠାକୁରଙ୍କୁ କେହି ଦୁର୍ବୃତ୍ତ ଚୋରେଇ ନେଇଛି

ପଦ୍ମା - ହଁ

ସୁଭଦ୍ରା - ଅନ୍ୟ କିଏ କାହିଁକି ନେବ ସେ ବଦ୍‌ମାସ ପୂଜକର କାମ, ତାକୁ ଗୋଟେ ପାଗଳ ବାନ୍ଧି ରଖିଛି, ସାର ତ ଏବେ ଥାନାକୁ ଫୋନ୍ କରୁଥିଲେ ସେମାନେ ସେ ପୂଜକକୁ Arrest କରି ଆଣିବେ ।

ପଦ୍ମା - ନାଇଁ ମାଡାମ୍ ସେ ନିର୍ଦ୍ଦୋଷ, ସେ କିଛି ଜାଣି ନାହାନ୍ତି । ମିଛଟାରେ ତାଙ୍କୁ ଦୋଷ ଦେଉଛନ୍ତି

ସୁଭଦ୍ରା - ମାନେ ? ସେ ନିର୍ଦ୍ଦୋଷ ? ତମେ କେମିତି ଜାଣିଲ ?

ପଦ୍ମା - ମୁଁ ତାଙ୍କ ସ୍ତ୍ରୀ

ସୁଭଦ୍ରା - ଆଚ୍ଛା ଆଚ୍ଛା ତମେ ତାହାଲେ ତାଙ୍କ ସ୍ତ୍ରୀ ?

ପଦ୍ମା - ହଁ ମାଡାମ୍ ସେ ପାଗଳ କବଳରୁ ମୋ ସ୍ୱାମୀଙ୍କୁ ଉଦ୍ଧାର କରନ୍ତୁ, ନହେଲେ ଭୋକ ଉପାସରେ ସେ ତାଙ୍କୁ ମାରିଦବ (ଏଣେ ତେଣେ ଚାହିଁ) ମାଡାମ୍ ଏଇ Blank Cheque ଟା ଛଡ଼ା ମୋ ପାଖରେ ଆଉ କିଛି ନାହିଁ ଏଇଟା ନହେଲେ ନେଇଯାଆନ୍ତୁ ମୋତେ ସାହାଯ୍ୟ କରନ୍ତୁ ।

ସୁଭଦ୍ରା - କଣ ଲାଂଚ ? ଆପଣ ମୋତେ ଲାଂଚ ଦେଉଛନ୍ତି ?

ପଦ୍ମା - ନାଇଁ ଆପଣ ଥ୍ରୋରେ...

ସୁଭଦ୍ରା - ଆପଣ ଜାଣନ୍ତି ମୁଁ ଏସ୍.ପି.ଙ୍କ ପତ୍ନୀ, ମୋ ଥ୍ରୋରେ ଲାଂଚ ଦେଇ ମୋ ଆଗରେ ତାଙ୍କ ମୁଣ୍ଡକୁ ତଳକୁ କରି ଦଉଛନ୍ତି ?

ପଦ୍ମା - ନାଇଁ ମାଡାମ ସମସ୍ତେତ..

ସୁଭଦ୍ରା - ସମସ୍ତେ ନଉଛନ୍ତି ବୋଲି କଣ ଆମେ ନବୁ ? ଆମେ କଣ ଦରମା ପାଉନୁ ?

ପଦ୍ମା - ଦରମା ପଇସାରେ କଣ ଏତେ ସବୁ କରିହେବ ?

ସୁଭଦ୍ରା - ଦରମା ପଇସାରେ ଯେତିକି ହବ ସେତିକି ହଉ ନହେଲେ ନ ହଉ ?

ପଦ୍ମା - ସେଥିରେ ସମସ୍ତଙ୍କୁ ସନ୍ତୁଷ୍ଟ କରିହବ ହେଲେ ପତ୍ନୀ....

ସୁଭଦ୍ରା - ପତ୍ନୀଙ୍କୁ ସନ୍ତୁଷ୍ଟ କରିବାପାଇଁ ପଡି ଲାଂଚ ନେବେ ? ଚୋରି

କରିବେ ? ମିଛ କହିବେ ? ତାଙ୍କ ବ୍ୟକ୍ତିତ୍ୱକୁ କିଦେବେ ? ପତ୍ନୀ ଅସନ୍ତୁଷ୍ଟ ହେଲେ କଣ ପୃଥିବୀ ଭାସିଯିବ ? ସନ୍ତୁଷ୍ଟ ହେଲେ କଣ ସେ ସ୍ୱର୍ଗ ସୁଖ ପାଇବେ ? ଏମିତି ଦିନେ ପତ୍ନୀକୁ ସନ୍ତୁଷ୍ଟ କରିବା ପାଇଁ ଇନ୍ଦ୍ରଦ୍ୟୁମ୍ନ ମହାରାଜ ଜଗନ୍ନାଥଙ୍କୁ ଖଣ୍ଡିଆ କରି ପକେଇଲେ । କାଳକାଳକୁ କଥା ରହିଗଲା ସ୍ତ୍ରୀ ବୁଦ୍ଧିରେ ଜଗନ୍ନାଥ ମହାପ୍ରଭୁ ଖଣ୍ଡିଆ କାହିଁକି ? ସ୍ତ୍ରୀକୁ ସନ୍ତୁଷ୍ଟ କରିବା ପାଇଁ ନିଜ ବିବେକକୁ ବଳି ଦେବା କଣ ଉଚିତ୍ ? ମୁଁ କଣ ଚାହିଁବି ମୋ ପାଇଁ ମୋ ସ୍ୱାମୀ ନିନ୍ଦିତ ହୁଅନ୍ତୁ । ଅପଯଶ ଅର୍ଜନ୍ତୁ ? ସ୍ତ୍ରୀକୁ ପତ୍ନୀ କହନ୍ତି ଏଇଥିପାଇଁ ଯେ ସେ ସର୍ବଦା ପତିଙ୍କୁ ପତନରୁ ରକ୍ଷା କରିଥାଏ । କିନ୍ତୁ ତମେ ଆମେ ଆଜିର ପତ୍ନୀ ପତିଙ୍କୁ ପତନରୁ ରକ୍ଷା କରୁଛୁ ନା ପତନରେ ପକେଇ ପତ୍ନୀ ପଦର ଅମର୍ଯ୍ୟାଦା କରୁଛୁ ? ସମୟ ଆସିଛି ଏବେ ବାଟରେ ଘାଟରେ ଜଗନ୍ନାଥ ଭାଇଭଉଣୀକୁ ସାଂଗରେ ଧରି ବୁଲୁଛନ୍ତି ଜଗତକୁ ଦେଖୁଛନ୍ତି । ଆସ ....ପତ୍ନୀପାଇଁ ଜଗନ୍ନାଥଙ୍କୁ ଆଉ ଖଣ୍ଡିଆ ହେବାକୁ ଦିଆଯିବନି ? ଆମେ ପତ୍ନୀମାନେ ଜଗନ୍ନାଥଙ୍କୁ ପୂର୍ଣ୍ଣାଙ୍ଗ କରିବୁ । (ପଦ୍ମା ଯାଉଥିଲେ) ରୁହନ୍ତୁ ନେଇଯାଆନ୍ତୁ ଆପଣଙ୍କର ଏ ଲାଂଚ ଆମର ଲୋଡ଼ାନାହିଁ । ଆପଣଙ୍କ ଭଳି ମୁଁ ମୋ ପତିକୁ ଲାଂଚମିଛ ଦୁର୍ନୀତି ନିକଟରେ ସମର୍ପି ଦେଇ ପାରିବିନି ।

ପଦ୍ମା - ବାସ୍ ବହୁତ ହୋଇଗଲା, କହୁ କହୁ ଆପଣ ବହୁତ କହି ଦେଲେଣି ଏବେ ମୋର ପାଳି ମୁଁ ବି ଦେଖେଇ ଦେବି ପତ୍ନୀ କାହାକୁ କହନ୍ତି ।

ସୁଭଦ୍ରା - ପାରୁଛ ଯଦି ସିଧା ବାଟରେ ଚାଲିବା ଶିଖ ଆଉ ନିଜ ସୁଖ ପାଇଁ ଅନ୍ୟକୁ ପଙ୍କ ଭିତରକୁ ଠେଲିଦେବାର ଅଧିକାର ତମର ନାହିଁ ।

ପଦ୍ମା - ବାସ୍ତବିକ (ଚେକ୍ ନେଇ)ମୋ ପାଇଁ ମୋ ପତି ଆଜି ପଙ୍କ ଭିତରେ ମୋର ଭୁଲ ହୋଇଛି ମାଡାମ୍ (ଅଂଧାର)

ଅନ୍ୟ zoneକୁ ଆଲୋକ ଆସିବାରୁ
ଦେଖାଯାଏ ବାହାରି ଆସନ୍ତି ଜଗନ୍ନାଥ
ବଳଭଦ୍ର ସୁଭଦ୍ରା ହସି ହସି

ଜଗନ୍ନାଥ - ବାସ୍ ଏଥର ଆମର ମୂର୍ତ୍ତୀ ପୂର୍ଣ୍ଣାଙ୍ଗ ହେବ

ବଳଭଦ୍ର - ପତ୍ନୀ ମନରେ ସଂସ୍କାର ଆସିବ

ସୁଭଦ୍ରା - ପତ୍ନୀ ଆଉ ପତିଙ୍କୁ ଅସତ୍ ପଥକୁ ନେବନି

ଜଗନ୍ନାଥ - କିନ୍ତୁ ସେ ବିଦେଶୀ ସଂସ୍କୃତିର ବାହକ, ସେ ଭୌତିକ ସୁଖ ସଂଭୋଗର ପ୍ରବଚକ ଏବେବି ଏ ମାଟି ଗଳି କନ୍ଦିରେ ବୁଲୁଛି । ବୁଲି ବୁଲି ଅପ ସଂସ୍କୃତିର ବୀଜ ବୁଣୁଛି

ବଳଭଦ୍ର - ତାକୁ ଶାସ୍ତି ନ ଦେଲେ ଆମର ଏ ମର୍ତ୍ତ୍ୟଯାତ୍ରା ବିଫଳ ହେବ

ସୁଭଦ୍ରା - ହଁ ତାକୁ ଉଚିତ୍ ଶିକ୍ଷା ଦେବା ଆବଶ୍ୟକ

ଜଗନ୍ନାଥ - ଏଇ ଦେଖ ସେ ଆମରି ପାଖକୁ ଆସୁଛି
(ଅମର ଲୁଚି ଲୁଚି ଯାଉଥାଏ ସାମ୍ନାରେ ଆସନ୍ତି ଜଗନ୍ନାଥ)

ଜଗନ୍ନାଥ - କୁଆଡ଼େ ଯାଉଛ ସୌଦାଗର ?

ଅମର - ଏଁ ନା ନା ମୁଁ ଏମିତି (ସୁଭଦ୍ରା ଆସନ୍ତି)

ସୁଭଦ୍ରା - କେମିତି ଅଛ ସୌଦାଗର

ଅମର - ନା ନା ଭଲ ଭଲ (ଜଗନ୍ନାଥ ଆସନ୍ତି)

ଜଗନ୍ନାଥ - ଆମେ ସେହି ଜଗନ୍ନାଥ ବଳଭଦ୍ର ସୁଭଦ୍ର ଯାହାକୁ ତୁମେ କିଣିନେଇଛ ସୌଦାଗର

ଅମର - ଏ ଏ ନା ନା ହଁ

ବଳଭଦ୍ର - ଆମକୁ କିଣିନେବା ପାଇଁ ତମ ଆଗ୍ରହ ଆମକୁ ଆଶ୍ଚର୍ଯ୍ୟ କରିଛି ସୌଦାଗର

ସୁଭଦ୍ରା - ଆମକୁ ତ ତମେ କିଣିସାରିଛ

ଅମର - ହଁ ହଁ

ଜଗନ୍ନାଥ - ଆମେ ବି ତମ ସହିତ ଯିବାକୁ ପ୍ରସ୍ତୁତ ଅଛୁ ସୌଦାଗର

ଅମର - ଏଁ ହଁ ହଁ
ବଳଭଦ୍ର - କଣ ଆମକୁ ନବ ସୌଦାଗର ?
ଅମର - ହଁ ହଁ ଯିବା ଯିବା
ସୁଭଦ୍ରା - ଆମ ମୂର୍ତ୍ତିକୁ କାହିଁକି ନବ, ଆମକୁ ନେଇଚାଲ
ଅମର - ହଁ ବଢ଼ିଆ ହବ ନେଇଯିବି । ମୋର ସବୁ ଅଛି ଖାଲି ଆପଣଙ୍କ ପରି ଈଶ୍ୱର ଥିଲେ ମୁଁ ଗୋଟାପଣେ ପୃଥିବୀଟାକୁ ପକେଟରେ ପକାଇ ବୁଲନ୍ତି
ଜଗନ୍ନାଥ - ହେଲେ ଆମର ସେଠି କିଛି ଅସୁବିଧା ହେବିନି ତ ?
ଅମର - ନା ନା ମୋ କଂପାନୀର ବହୁତ ଟଙ୍କା, ଯାହା ଚାହିଁବେ ସବୁ ଦେବି । ଉଆସ, ମଂଡପ ଠିକ୍ ଏମିତି ବନେଇ ଦେବି ।
ବଳଭଦ୍ର - ଅଭାବ ପଡିଲେ ଆଉ କାହାକୁ ବିକି ଦେବେନିତ ?
ଅମର - ଅ..ଭା..ବ... ପୁଣି ଅମରର ? (ହସନ୍ତି) କେତେ ନେବେ, କେତେ ଖାଇବେ ?
ସୁଭଦ୍ରା - ଠିକ୍ ଅଛି, ଚାଲ ? (ଯାଆନ୍ତି ଅନ୍ଧାର)

ଅନ୍ୟ ଏକ zoneକୁ ଆଲୋକ ଆସେ ଦେଖାଯାଏ ପୁରୁଷୋତ୍ତମ ଖୋଜୁଥାଏ ପଦ୍ମାକୁ ସାମ୍ନାରେ ହଠାତ୍ ପଦ୍ମା

ପୁରୁଷୋ - ପଦ୍ମା
ପଦ୍ମା - (ଚମକିପଡ଼ି) କିଏ ?
ପୁରୁଷୋ - ମୁଁ, ମୋତେ ଚିହ୍ନି ପାରୁନ ?
ପଦ୍ମା - ତମେ ..... ତମେ କିଏ ? ପ୍ରଭୁ ଜଗନ୍ନାଥ ?
ପୁରୁଷୋ - (ହସି) ହାଟ୍ ମୁଁ ମୁଁ
ପଦ୍ମା - ତମେତ ...... କେମିତି ?
ପୁରୁଷୋ - ବିଶ୍ୱାସ କରିପାରୁନତ ? ମୁଁ ବି ବିଶ୍ୱାସ କରିପାରୁନି, ତଥାପି ସତ,

ଦାସିଆ କକେଇ ଆଖିବୁଜି ଜଗନ୍ନାଥଙ୍କୁ ଭଜୁଥିବା ବେଳେ ମୁଁ ଚୁପ୍‌କିନା ଲୁଚି ପଳେଇ ଆସିଛି

ପଦ୍ମା - ଲୁଚିକରି ପଳେଇ ଆସିଲ ?

ପୁରୁଷୋ - ହଁ, ଚାଲ ଏଇ ରାତି ଭିତରେ ଆମେ ଅନ୍ୟ ଆଡ଼କୁ ପଳେଇଯିବା । ତମ ପାଖରେ ତ ସେ ଟଙ୍କା ଥିବ, ବାସ୍ ଆରାମରେ ରହିବା, ଚୁପ୍ ରହିଲ ଯେ ଆରେ ସେଟା Blank Cheque ଯେତେ ଇଛା ସେତେ ଲେଖିଦେଇ ଆମେ ଧନୀ ହୋଇଯିବା ।

ପଦ୍ମା - ନା, ପର ପଇସାରେ ଧନୀହେବା, ଚରିତ୍ରବିକି ଧନୀହେବା, ଅସତ୍ ପଥକୁ ଓହ୍ଲେଇ ଧନୀ ହେବା ଅପକ୍ଷୋ ହାଡ଼ଭାଂଗି ଗରୀବ ହୋଇ ବଂଚିବାରେ ଗୌରବ ଥାଏ ।

ପୁରୁଷୋ - ପଦ୍ମା

ପଦ୍ମା - ଏଇ ଚେକ୍‌ଟା ମୋତେ ଆମକୁ ଅନେକ ତଳକୁ ନେଇଗଲାଣି ଇଏ ଥିଲେ ଆମେ ଆହୁରି ତଳକୁ ଯିବାର ରାସ୍ତା ଖାଜିବୁଲିବୁ । (ଚିରିଦେଲେ ଚେକ୍)

ପୁରୁଷୋ - ଇଏ କଣ କଲ ପଦ୍ମା ?

ପଦ୍ମା - ଜଣେ ପତ୍ନୀର କର୍ତ୍ତବ୍ୟ କରିଛି, ଚାଲ-

ପୁରୁଷୋ - କୁଆଡ଼େ ?

ପଦ୍ମା - ଦାସିଆ କକେଇଙ୍କ ନିକଟକୁ

ପୁରୁଷୋ - ପଦ୍ମା ତମେ କଣ ପାଗଳ ହେଲ ?

ପଦ୍ମା - ପାଗଳ ହୋଇଥିଲି, ଏବେ ମଣିଷ ହେବି । ହୁଁ ଚାଲ ।

ପୁରୁଷୋ - ଦାସିଆ କକେଇ ଯୋଉ ଲୋକ ମୋତେ ଦେଖିଲେ ସେ ଆଉ ଛାଡ଼ିବ ଆଉ ତା ହାତରେ ଯୋଉ ପାଞ୍ଚହାତିଆ ଠେଙ୍ଗା

ପଦ୍ମା - ତା ବୋଲି ତମେ ଲୁଚିକରି ପଳେଇ ଆସିବ ? ନା ମୁଁ ଚାହେଁନା ମୋ ପତି ଏମିତି ଚୋର ଭଳି ଲୁଚିକରି ଆସି ମୋ ପଣତ ତଳେ ମୁହଁ ଲୁଚେଇ ବୁଲୁ । କୌଣସି ପତ୍ନୀ ବି ଏକଥା ଚାହିଁବନି । ଯଦି

ପାରୁଛ ନିଜେ ନିର୍ଦ୍ଦୋଷ ବୋଲି ପ୍ରମାଣ ଦେଇ ମୁଣ୍ଡ ଉଠେଇ ଆସ ନହେଲେ ମୁଁ ତମକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରି ଆଣିବ । ଏମିତି ନୁହେଁ ନା,

ପୁରୁଷୋ - ଏ ତମର କଣ ହୋଇଛି ପଦ୍ମା

ଦାସିଆ - (ପଶିଆସନ୍ତି) ବୋହୂମା ଏ କଣ କହୁଛ ?

ଉଭୟେ - କକେଇ

ଦାସିଆ - ହଁ ଏଇଠି ଏଇ ଗଛ ଆଡୁଆଳରେ ଥାଇ ମୁଁ ତମକଥା ଶୁଣିଛି ହେଲେ

ପଦ୍ମା - ମୁଁ କଣ ଭୁଲ୍ କହୁଛି

ପୁରୁଷୋ - ମୋର ଭୁଲ ହୋଇଯାଇଛି କକେଇ

ପଦ୍ମା - କକେଇ ସେ ତମପାଖରୁ ପଳେଇ ଆସିଭୁଲ୍ କରିଛି, ନିଅ, ମୁଁ ତାଙ୍କୁ ତମ ହାତରେ ଧରେଇ ଦଉଛି ତମ ଇଚ୍ଛା, ତାଙ୍କୁ ଯାହା ଦଣ୍ଡ ଦଉଛି ଦିଅ ।

ଦାସିଆ - ମା, ତମେ ଏକଣ କହୁଛ ? ମୁଁ କଣ ଦଣ୍ଡଦବାର ଲୋକ, ମୁଁ କେବଳ ଠାକୁରଙ୍କ ମାୟାରେ ପାଗଳ ।

ପୁରୁଷୋ - କକେଇ ମୋତେ ମାର ପିଟ ଯାହା କରୁଛ କର ଗାଳିଦିଅ

ଦାସିଆ - ସାନଗୋସେଇଁ, ତମେ ବ୍ରାହ୍ମଣ ନୀତି ଅନୀତି ପାପଧର୍ମ, ଭୁଲଠିକ୍‌ର ହିସାବ କର, ତମେ ଯଦି ପାପ କରିବ, ଅନୀତି କରିବ ଭୁଲ କରିବ ତାର ହିସାବ ଆଉ କିଏ କରିବ ?

ପୁରୁଷୋ - ନା, କକେଇ କେବଳ ବ୍ରାହ୍ମଣ କୁଳରେ ଜନ୍ମହୋଇ ପଇତାଟା ପକେଇ ଘଣ୍ଟି ବଜେଇ ଦେଲେ, ମଣିଷ ବ୍ରାହ୍ମଣ ହୋଇଯାଏନି । କର୍ମ ପାଇଁ ଜାତିର ମାନ୍ୟତା ମିଳେ ।

ପଦ୍ମା - ଆମ ଅପକର୍ମ ପାଇଁ ଠାକୁର ଦେଉଳ ଛାଡ଼ିଛନ୍ତି ।

ଦାସିଆ - ତମେ ସତକୁହ ଗୋସେଇଁ ତମେ ସତରେ ମୋ ଠାକୁର ବିକି ଦେଇନ

ପୁରୁଷୋ - ନା କକେଇ ନା

ଦାସିଆ - ମୋ ମୁଣ୍ଡ ଛୁଇଁଲ ?

ପୁରୁଷୋ - ତମ ମୁଣ୍ଡ ଛୁଇଁ କହୁଛି

ଦାସିଆ - ସାନ ଗୋସେଇଁ, ତେବେ ତେବେ...... ଠାକୁର ଗଲେ କୁଆଡ଼େ ?

ପୁରୁଷୋ - ବାପାଙ୍କ ପାଇଁ ଠାକୁର ଚାଲିଗଲେ କକେଇ।

ପଦ୍ମା - ହଁ, ଆମେ ନୀତିରେ ଠାକୁରଙ୍କୁ ପୂଜି ପାରିଲୁନି।

ପୁରୁଷୋ - ବାପାଙ୍କ ନୀତିରେ ଆମେ ଚଳିପାରିଲୁନି।

ଦାସିଆ - ସେହି ବାପା ଆସିଲେ ଠାକୁର ଆସିବେ

ଉଭୟେ - ବାପା କଣ ଆମକୁ କ୍ଷମା କରିଦେବେ ?

ଦାସିଆ - ବାପା ସିଏ, ବାପାଙ୍କୁ ବାପା ବୋଲି ଡାକିଦେଲେ ସେ କଣ ପୁଅ ବୋହୂଙ୍କ ଡାକ ଶୁଣିବେନି ? ଆସ ମୋ ସହିତ। (ଯାଆନ୍ତି ଅଂଧାର)

ଅନ୍ୟ ଏକ **zone**କୁ ଆଲୋକ ଆସେ ଦେଖାଯାଏ ଅମର ଆଗେ ଆଗେ ଥାଇ ପଛରେ ଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ନିଜର ବଡପଣ ଦେଖାଉଥାଆନ୍ତି।

ଅମର - ସେଗୁଡାତ ଦେଖିଲେ ମୋର ଗାଡି ଘୋଡା, ଜମିବାଡି। ଏଇ ଦେଖନ୍ତୁ ମୋର ସତୁତୀ ମହଲା ବିଶିଷ୍ଟ ପ୍ରାସାଦ। ଯେଉଁଠି ଆପଣମାନେ ରହିବାର ବନ୍ଦୋବସ୍ତ କରାଯାଇଛି। ଏମିତି ଶହ ଶହ ପ୍ରସାଦ ମୋର ଅଛି। ଏହାଛଡା ମୋଟର, ଜାହାଜ, ଉଡାଜାହାଜ, ସୁନା ରୂପା ମୋତି ମାଣିକ୍ୟର ଖଣି ଏମିତି ଅନେକ..

ଜଗନ୍ନାଥ - ଅଚ୍ଛା ତମର କଳକାରଖାନା ବି ଅଛି ?

ଅମର - ହଁ, ଲୁଗା, ଲୁହା, ରଡ୍, ସିମେଣ୍ଟ୍ ଏମିତି ଅନେକ କଳକାରଖାନା ଅଛି।

ସୁଭଦ୍ରା - ଧନ ସଂପଦ ?

ଅମର - ହଁ, ଧନ ସଂପଦ ସବୁଅଛି, ଖାଲି ଆପଣଙ୍କ ପରି ଈଶ୍ୱର ଥିଲେ ମୁଁ ଗୋଟାପଣେ ଏ ପୃଥିବୀଟାକୁ ପକେଟରେ ପୂରେଇ ବୁଲନ୍ତି।

ଜଗନ୍ନାଥ - ଭାଇନା, ମୋତେ ଭୀଷଣ ଭୋକ ହେଲାଣି, ତୁମକୁ ହେଉନି ?
ବଳଭଦ୍ର - ଆରେ ସତେତ, ଆମେ ଭୋକଶୋଷ ଭୁଲିଗଲୁଣି ।
ଅମର - କଣ ଖାଇବେ ? ଆପଣ ଯାହା ଖାଇବେ ମୁଁ ସଂଗେ ସଂଗେ ମଗେଇଦେବି ।
ସୁଭଦ୍ରା - ନାଇଁ ଖାଇବା ପ୍ରସଙ୍ଗରେ ଆମର ବହୁତ ନୀତିଅଛି ।
ଅମର - କୁହନ୍ତୁ ।
ଜଗନ୍ନାଥ - ପ୍ରତିଦିନ ଆମେ ଛପନ ପ୍ରକାରର ଭୋଗ ଆମେ ଖାଉ ।
ଅମର - ଛପନ ପ୍ରକାର ?
ବଳଭଦ୍ର - ବିଶେଷ ପର୍ବରେ ଚୌରାଶି ପ୍ରକାରର ଭୋଗ ଲାଗେ ।
ଅମର - ଚୌରାଶି ପ୍ରକାର ?
ସୁଭଦ୍ରା - ଆମେ ପ୍ରତିଦିନ ତିନି ଥର ପଖାଳ ଖାଉ ।
ଅମର - ପଖାଳ ?
ଜଗନ୍ନାଥ - ସକାଳେ ମଲ୍ଲୀ ପଖାଳ ।
ଅମର - ମଲ୍ଲୀ ପଖାଳ ?
ବଳଭଦ୍ର - ଅର୍ଥାତ୍ ଏହି ପଖାଳରେ ମଲ୍ଲୀଫୁଲର କଢି ଦିଆଯାଏ ।
ସୁଭଦ୍ରା - ସଂଧ୍ୟାରେ ଦହି ପଖାଳ
ଜଗନ୍ନାଥ - ଦହି ଓ ପଖାଳ ।
ବଳଭଦ୍ର - ରାତିରେ ବଡସିଂହାର ସମୟରେ
ଜଗନ୍ନାଥ - ସରୁ ଅନ୍ନ, ଦହ. ଅଦା, ଜିରା, ଘିଅ, ଚିନି ପଡିଥିବା ଦହି ପଖାଳ ।
ସୁଭଦ୍ରା - ଆମ ଭୋଗ ପ୍ରଧାନତଃ ଦୁଇ ପ୍ରକାର
ଜଗନ୍ନାଥ - ସଂଖୁଡି ଭୋଗ
ବଳଭଦ୍ର - ନିଶଂଖୁଡି ଭୋଗ
ସୁଭଦ୍ରା - ସଂଖୁଡି ଭୋଗରେ ଅନ୍ନ,ଡାଲି, ତରକାରୀ, ଆମ୍ବଳି, ଶାକର, ବେସର..
ଜଗନ୍ନାଥ - ନିଃସଙ୍ଖୁଡି ଭୋଗରେ ଅଟା, ଗହମ, ଘିଅ, ଗୁଡ, ନବାତ ମିଶ୍ରିତ ତିଆରି ବିଭିନ୍ନ ମିଷ୍ଟାନ୍ନ ।

ବଳଭଦ୍ର - ଶୁଣ ଲାଉ, ଭେଣ୍ଡି, ଆଳୁ, ବିଲାତି, ରସୁଣ, ପିଆଜ, ଅମୃତଭଣ୍ଡା

ଜଗନ୍ନାଥ - ଛଚିନ୍ଦ୍ରା, କଲରା, ପୋଇ, କଳମ, କୋବି

ସୁଭଦ୍ରା - ଆମ ପାଖରେ ଲାଗିବନି ।

ଅମର - ପ୍ରଭୁ, ମୁଁ ଏତିକି ଆଣିସାରେ। (ଅମରକୁ କେନ୍ଦ୍ର କରି ମୂର୍ତ୍ତୀମାନେ ବୁଲି ବୁଲି କହନ୍ତି... ଅଂଧାର)

ଅନ୍ୟ ଏକ **zone**କୁ ଆଲୋକ ଆସେ
ଦେଖାଯାଏ ପୁରୁଷୋତ୍ତମ, ପଦ୍ମା, ଦାସିଆ
ଓ ବ୍ରହ୍ମାନ୍ନା କଥାହୁଅନ୍ତି ।

ବ୍ରହ୍ମାନନ୍ଦ - ଚୁପ୍ ! ତମ ମାନଙ୍କୁ ଲାଜ ନାହିଁ ? ତମେ ଜଗନ୍ନାଥ ଦେଶର ଲୋକ ହୋଇ ଶେଷରେ ଜଗନ୍ନାଥଙ୍କୁ ବିକିଦେଲ ?

ପୁରୁଷୋ - ବାପା !

ବ୍ରହ୍ମାନନ୍ଦ - (ଚାପଡା ମାରି) ଚୁପ୍ କର କୁଳାଙ୍ଗାର। କୋଉ ମୁହଁ ନେଇ ଆସିଛୁ ମୋ ପାଖକୁ ? ସ୍ତ୍ରୀକୁ ସନ୍ତୁଷ୍ଟ କରିବା ପାଇଁ ଯାବତୀୟ ଅନାଚାର କଲୁ। ବାପକୁ ଧକ୍କା ଦେଇ ଘରୁ ତଡିଲୁ। ଶେଷରେ କୁଳଦେବତାଙ୍କୁ ଯବନ ହାତରେ ବିକିଦେଲୁ ? ଧିକ୍ ଧିକ୍ ତୋ ମଣିଷ ପଣିଆକୁ ?

ପୁରୁଷୋ - ବାପା ଆଜି ଯୋଉ ଚାପଡାଟା ମାରି ମୋତେ ବ୍ରହ୍ମଜ୍ଞାନ ଦଉଛ ସେଦିନ କାହିଁକି ମାରିଲନି ?

ବ୍ରହ୍ମାନନ୍ଦ - ମୁଁ କଣ ଜାଣିଥିଲି ତୁ ଏତେ ତଳକୁ ଖସିଯିବୁ ?

ଦାସିଆ - ଗୋସାଇଁ ସେମାନେ ପିଲାଲୋକ, ମୋତେତ ତମେ ଠେଙ୍ଗା ଧରେଇ ଆସିଥିଲ ମୁଁ କଣ କଲି, ମୁଁ କଣ ଠାକୁରଙ୍କୁ ରଖି ପାରିଲି ? ମୋର କଣ ଦୋଷ ନାହିଁ ।

ପଦ୍ମା - ନାଇଁ ବାପା, ଏ ଦୋଷ କାହାର ନୁହେଁ ମୋର, ମୁଁ ନୈତିକ ସୁଖ ଚିହ୍ନିପାରିଲିନି, ସ୍ୱର୍ଗୀୟ ସୁଖ କଣ ଜାଣିପାରିଲିନି, ଭୌତିକ ସୁଖ

ଲାଳସାରେ ପାଗଳ ହୋଇମୁଁ ତାଙ୍କୁ କୁପଥକୁ ନେଇଗଲି । ମୁଁ ତାଙ୍କୁ ଅନ୍ୟାୟ କରିବାକୁ ଅସତ୍ ପଥରେ ଚାଲିବାକୁ ଉତ୍ସାହିତ କରିଥିଲି, ମୋତେ ଦଣ୍ଡ ଦିଅନ୍ତୁ ବାପା ମୁଁ ଆପଣଙ୍କର କୁଳବଧୂ ଦେବାକୁ ଯୋଗ୍ୟା ନୁହେଁ।

ବ୍ରହ୍ମାନନ୍ଦ - ମୁଁ ମାନୁଛି ସ୍ତ୍ରୀ ବୁଦ୍ଧିରେ ଜଗନ୍ନାଥ ମହାପ୍ରଭୁ ଦରଗଢ଼ା, ଏକଥା ଜାଣିସୁଦ୍ଧା ଆମେ ବିନା ବିଚାରରେ ସ୍ତ୍ରୀ ବୁଦ୍ଧିରେ ପରିଚାଳିତ ହେବା କଣ ଉଚିତ୍ ?

ପଦ୍ମ - ନାଇଁ ବାପା ସ୍ତ୍ରୀ ଜାତି ଦିନେ ଯୋଉ ଭୁଲ୍ କରିଥିଲା ତାର ପୁନରାବୃତ୍ତି ହେବାକୁ ଆଉ ଦିଆଯିବନି, ମୁଁ ପ୍ରତିଜ୍ଞା କରୁଛି ବାପା ଜଗନ୍ନାଥ ମୂର୍ତ୍ତିକୁ ପୂର୍ଣ୍ଣାଙ୍ଗ ନ କଲା ପର୍ଯ୍ୟନ୍ତ...

ବ୍ରହ୍ମାନନ୍ଦ - ନା ମା ନା, ପୂର୍ଣ୍ଣବ୍ରହ୍ମ ସେ, ମୂର୍ତ୍ତିରେ ନଥାନ୍ତି ତାଙ୍କୁ ସିଏ ଗଢ଼ନ୍ତି ସିଏ ଯୋଡନ୍ତି ତୁମେ ପ୍ରତିଜ୍ଞା କରି ଲୋକହସା ହୁଅନି ।

ପଦ୍ମା - ଜଣେ ସ୍ତ୍ରୀର ଜଗନ୍ନାଥ ତ ତାର ପତି, ପତିଙ୍କ ପ୍ରତିମୂର୍ତ୍ତିକୁ ପୂର୍ଣ୍ଣାଙ୍ଗ କରି ଗଢ଼ିବା ପାଇଁତ ପତ୍ନୀ ହାତରେ ହାତୁଡି ଓ ନିହଣ ଅଛି, ପତ୍ନୀ କେବଳ ଚାହିଁଲେ ପତିଙ୍କ ଭାବମୂର୍ତ୍ତିକୁ ପୂର୍ଣ୍ଣାଙ୍ଗ କରି ଗଢ଼ିପାରିବ ।

ବ୍ରହ୍ମାନନ୍ଦ - ଆରେ ତମ ଜଗନ୍ନାଥଙ୍କୁ ସିନା ତମେ ଗଢିବ ମୋ ଜଗନ୍ନାଥ ଏ ଜାତିର ଜଗନ୍ନାଥଙ୍କୁ କିଏ ଆଣିଦବ ?

ପୁରୁଷୋ - (ପାଦ ଛୁଇଁ) ମୁଁ ପ୍ରତିଜ୍ଞା କରୁଛି ବାପା, ତମ ଜଗନ୍ନାଥ, ମୋ ଜଗନ୍ନାଥ, ଏ ଜଗତର ନାଥ ଜଗନ୍ନାଥଙ୍କୁ ମୁଁ ଖୋଜି ଆଣିବି। ମୁଁ ଜାଣେ ସେ କୋଉଠି ଅଛନ୍ତି।

ସମସ୍ତେ - କୋଉଠି ଅଛନ୍ତି ?

ପୁରୁଷୋ - ତାଙ୍କୁ ସେ ଯବନ ନେଇ କୋଉଠି ରଖିଛି। ଆସ ବାପା ଆମେ ପୁଣିଥରେ ଆମ ଜଗନ୍ନାଥଙ୍କୁ ଖୋଜି ଆଣିବା।

ସମସ୍ତେ - ହଁ ହଁ ଚାଲ

(ଅନ୍ୟ କୋନ୍‌କୁ ଆଲୋକ ଆସେ
ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଖାଉଥାଆନ୍ତି,
ଅମର ବିପର୍ଯ୍ୟସ୍ତ ବେଶରେ)

ଅମର - ଆଜ୍ଞା ଆପଣମାନଙ୍କୁ ଏତେ ପରିଶ୍ରମ କରି ଏତେଦୂରରୁ ଆଣିଲି, ଆପଣମାନଙ୍କୁ ଛପନ ଭୋଗ, ଛତିଶ ନିଯୋଗ, ଆଉ ଚଉଷଠି ଉପଚାରର ସେବା କରୁଛି, କିନ୍ତୁ ମୋର ଆଶା ଥିଲା ମୋ କଂପାନୀ ବଢ଼ିବ, ନୂଆ ନୂଆ ଇଣ୍ଡଷ୍ଟ୍ରି ହବ। କାହିଁ, ହବାର ତ ଦୂରର କଥା, ଗୋଟେ ପରେ ଗୋଟେ ବିକ୍ରି ହଉଛି, ଏ କୋଠାଟି ଶେଷ ସମ୍ବଳ।

ଜଗନ୍ନାଥ - ଆରେ ଆମ ଖିଆପିଆ ସରିଲେ ତମ କାମ କରିବୁନି ?

ବଳଭଦ୍ର - କାହିଁ, ଆମ ଖିଆପିଆ ଠିକରେ କଲେ ତମ ଫଳ ପାଇବ।

ଅମର - ମୁଁ ତ ବନ୍ଦୋବସ୍ତ କରିଛି।

ସୁଭଦ୍ରା - କାହିଁ, ଆମ ପାଖରେ ଷାଠିଏ ପଉଟି ଅନ୍ନ ଲାଗି ହେବା କଥା-

ଜଗନ୍ନାଥ - ଏଠି କେତେଦିନ ହେଲାଡ ହଉନି ?

ବଳଭଦ୍ର - ଆମ ପେଟ ଅଧା ପୁରୁଛି।

ସୁଭଦ୍ରା - ଏ ପର୍ଯ୍ୟନ୍ତ ତ ଜଗନ୍ନାଥ ବଲ୍ଲଭ ଲାଗି ହେଇନି

ଜଗନ୍ନାଥ - ଯାଅ, ଯାଅ ଜଗନ୍ନାଥ ବଲ୍ଲଭ ଆଣ

ଅମର - ଆଣୁଛି

ବଳଭଦ୍ର - ଖଜା ଆଣ ଖଜା

ସୁଭଦ୍ରା - ଗଜା ଆଣ ଗଜା

ଜଗନ୍ନାଥ - ଫେଣି ଆଣ ଫେଣି

ବଳଭଦ୍ର - ଖୁରୁମା ଆଣ ଖୁରୁମା

ସୁଭଦ୍ରା - ପୁରୀ ପୁରୀ (ଅମର ଯାଉଥାଏ ଆଣୁଥାଏ, ଶେଷରେ ଆଉ ଆସେନି)

ସମସ୍ତେ - ଏକାଥରକେ କୁହନ୍ତି (ଅମର ଆସେନି, ଏମାନେ ହସିଉଠନ୍ତି।)

(ଅନ୍ୟ କୋନ୍‌କୁ ଆଲୋକ ଦେଖାଯାଏ ବ୍ରହ୍ମାନ୍ନା, ଦାସିଆ ପଦ୍ମା ଓ ପୁରୁଷୋତ୍ତମ ଆସନ୍ତି, ଦେଖନ୍ତି)

ବ୍ରହ୍ମାନନ୍ଦ - ଏଇଠି ପ୍ରଭୁ ଜଗନ୍ନାଥ ଅଛନ୍ତି

ଦାସିଆ - ଏଇଠି ମୋ ଜଗା ବସିଛି

ପଦ୍ମା - କାହାନ୍ତି ଅମର ବାବୁ କାହାନ୍ତି (ପୁରୁଷୋତ୍ତମକୁ ପଚାରେ)

ପୁରୁଷୋ - ମୁଁ ତ ସେଇଆ ଦେଖୁଛି ଅମର ବାବୁ କାହାନ୍ତି ?

ବ୍ରହ୍ମାନନ୍ଦ - ହଇରେ ପୁରୁଷୋତ୍ତମ, କାହାନ୍ତି ମୋ ପ୍ରଭୁ କାହାନ୍ତି ?

ପୁରୁଷୋ - ଏଇଠିତ ଥିବା କଥା

ଦାସିଆ - ସାନ ଗୋସେଇଁ ମୋ ଜଗା କାହିଁ

ପଦ୍ମା - କଅଣ ହେଲା, ତମେ ଟିକିଏ ଦେଖ, ଅମର ବାବୁଙ୍କୁ ଖୋଜ, କାହାକୁ ପଚାର

ପୁରୁଷୋ - ଏଇତ ଜଣେ କିଏ ଝାଡୁ ମାରି ମାରି ଏ ପଟକୁ ଆସୁଛି, ଦେଖେ ପଚାରେ... । ହେଇଟି ଟିକିଏ ଅମରବାବୁଙ୍କୁ ଡାକିଲ ? (ପରସ୍ପର ଚାହାନ୍ତି)

ଅମର - ଆରେ ପଣ୍ଡାବାବୁ ! ଆପଣମାନେ ଆସିଛନ୍ତି ? ମୋତେ ବଞ୍ଚେଇ ଦେଲେ

ପୁରୁଷୋ - କାହିଁକି ଆପଣଙ୍କ ଏ ଅବସ୍ଥା ?

ଅମର - ମୋତେ କ୍ଷମା କରନ୍ତୁ ଆଜ୍ଞା ମୁଁ ଜୀବନରେ ଗୋଟେ ମସ୍ତବଡଭୁଲ୍ କରିଛି ଯାହାର ପରିଣାମ ଏବେ ଭୋଗୁଛି ।

ପୁରୁଷୋ - କଣ ହୋଇଛି ?

ଅମର - ମୋ କଂପାନୀ ଇଣ୍ଡଷ୍ଟ୍ରି ବିଲ୍‌ଡିଂ ଫାର୍ମ, ଖଣିଖାଦାନ ଧନସଂପତ୍ତି ସବୁ ଚାଲିଗଲାଣି । ଏବେ ମୋରି କଂପାନୀରେ ଝାଡୁଦାର କାମକରି ଆପଣଙ୍କ ଠାକୁରଙ୍କୁ ପୋଷୁଛି । ଯେଉଁ ବେଶ ଦେଖେଇ ମୁଁ ଆପଣଙ୍କ ଜଗନ୍ନାଥଙ୍କୁ କିଣିବାକୁ ଇଚ୍ଛା କରିଥିଲି, ସେ ବେଶ ମୋର ବିକ୍ରି ହୋଇ ଗଲାଣି । ତଥାପି ଜଗନ୍ନାଥଙ୍କୁ କିଣି ପାରିଲିନି ।

ସମସ୍ତେ - ମାନେ ?

ଅମର - ଆପଣଙ୍କ ଠାକୁରଙ୍କୁ ଖୁଆଇ ଖୁଆଇ ଏଇ ବେଶରେ ଏଇ ସ୍ଥାନରେ ଏଇ ପଦରେ ପହଞ୍ଚି ସାରିଲେଣି ଆପଣଙ୍କ ହାତ ଧରୁଛି ଆପଣଙ୍କ ଜଗନ୍ନାଥଙ୍କୁ ଆପଣ ନେଇଯାଆନ୍ତୁ ।

ପୁରୁଷୋ - ମୁଁ ମଧ ଯେଉଁ ବେଶର ଲୋଭରେ ଜଗନ୍ନାଥଙ୍କୁ ବିକି ଦେବାର ଅପଚେଷ୍ଟା କରିଥିଲି ସେ ବେଶ ସାଥିରେ ନେଇ ଆସିଛି, ଆପଣଙ୍କ ବେଶ ଆପଣ ରଖନ୍ତୁ । ମୋ ଜଗନ୍ନାଥଙ୍କୁ ମୋତେ ଫେରେଇ ଦିଅନ୍ତୁ ।

ବ୍ରହ୍ମାନ୍ନା - ଆରେ ମୁର୍ଖ ଜଗନ୍ନାଥଙ୍କୁ କେହି କଣ କିଣିପାରେ ନା ବିକିପାରେ । କାହାନ୍ତି ମୋ ଜଗନ୍ନାଥ କୋଉଠି ଅଛନ୍ତି ମହାପ୍ରଭୋ

ଅନ୍ୟମାନେ- କାହାନ୍ତି ?

ଅମର - ଆସନ୍ତୁ ଆସନ୍ତୁ ଭିତରକୁ ଆସନ୍ତୁ (ସମସ୍ତେ ଯାଆନ୍ତି)

ଅମର - (ଯାଉ ଯାଉ) ପ୍ରଭୁ ଜଗନ୍ନାଥ ମୋତେ କ୍ଷମାକର, ମୁଁ ଆଉ ଖାଇବାକୁ ଦେଇ ପାରିବିନି, ଆପଣଙ୍କ ଓଡିଆ ଆସିଛି ଯାଆନ୍ତୁ ପ୍ରଭୁ (ଦେଖନ୍ତି କେହି ନାହାନ୍ତି) ଇଏ କଣ କେହି ନାହାନ୍ତି

ପୁରୁଷୋ - କେହି ନାହାନ୍ତି, କୁଆଡେ ଗଲେ ? ତମେ ମିଛକହୁଛ

ଅମର - ନାଇଁ ସତ କହୁଛି - ଏଇଠିତ ଥିଲେ

ବ୍ରହ୍ମାନନ୍ଦ - ହେ ପ୍ରଭୋ ଆମକୁ କ୍ଷମାକର

ଦାସିଆ - ଜଗା ଆ ଥରେ ମୋ କୋଳକୁ

ଅମର - ପ୍ରଭୋ ଜଗନ୍ନାଥ

ଜଗନ୍ନାଥ - (ଭଏସ୍) ହେ ମଣିଷମାନେ ମୋତେ ଖୋଜିବାକୁ ଚେଷ୍ଟା କରନି

ବଳଭଦ୍ର - (ଭଏସ୍) ଆମେ ଆଉ ତମ ନିର୍ମିତ କାଷ୍ଟପାଷାଣ ମୂର୍ତ୍ତିରେ ରହିବୁନି

ସୁଭଦ୍ରା - (ଭଏସ୍) ଆମେ ଆଉ ମନ୍ଦିରଭିତରେ ଫୁଲ ଚନ୍ଦନ ପିନ୍ଧି ନିରବରେ ବସିପାରିବୁନି

ଜଗନ୍ନାଥ - (ଭଏସ୍) ଆମକୁ ଦେଖ ତମ ଭିତରେ ତମ ଗହଣରେ ତମକୁ ଆମେ ଗୋଡେ ଗୋଡେ ଜଗିବୁ

ବଳଭଦ୍ର - (ଭଏସ୍) ମିଛ କହିଲେ ପାପ କଲେ

ସୁଭଦ୍ରା - (ଭଏସ୍) ଚୋରି କଲେ ଅନ୍ୟାୟ କଲେ

ଜଗନ୍ନାଥ - (ଭଏସ୍) ମୁଁ ଜଗନ୍ନାଥ ଜଗିଛି

ବଳଭଦ୍ର - ସାବଧାନ ସାମ୍ନାରେ ଜଗନ୍ନାଥ

ଜଗନ୍ନାଥ - ଆଗରେ ଜଗନ୍ନାଥ

ସୁଭଦ୍ରା - ତମ ଚାରିପଟେ ଆମେ । (ସମସ୍ତେ ତଟସ୍ଥ)

ଭଜନ - ଜଗା ଜଗିଥାରେ ଜଗିଥା ଓଡ଼ିଆ ଜାତିକୁ

ଓଡ଼ିଆ କର୍ପୂର ଉଡ଼ିତ ଗଲାଣି....ଧରିଥା କପଡ଼ା ଖଣ୍ଡିକୁ

-- ସମାପ୍ତ --






ପବ୍ଲିକେଶନ୍‌ର

ପରବର୍ତ୍ତୀ ଆକର୍ଷଣ

ପାଞ୍ଚୋଟି ହାସ୍ୟରସାତ୍ମକ ନାଟକର

ଅପୂର୍ବ ସମାହାର

**'ହେମେନ୍ଦ୍ର ହାସ୍ୟ ପଞ୍ଚକ'**



ଖୁବ୍ ଶୀଘ୍ର ପ୍ରକାଶ ପାଇବାକୁ ଯାଉଛି ।





ଓଡ଼ିଆ ମଂଚ ନାଟକ ପାଇଁ ଯେଉଁ କେତେଜଣ ନାଟ୍ୟକାର ନିଜକୁ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗ କରି ଦେଇଛନ୍ତି, ସେମାନଙ୍କ ମଧ୍ୟରେ ନାଟ୍ୟକାର ହେମେନ୍ଦ୍ର ମହାପାତ୍ର ଅନ୍ୟତମ । ମଂଚ ଉପରେ ସାଂପ୍ରତିକ ଜୀବନକୁ ବେଶ୍ ଫଳପ୍ରଦ ଭାବରେ ପରୀକ୍ଷା ନିରୀକ୍ଷା କରିବାରେ ତାଙ୍କର ଏକନିଷ୍ଠ ଉଦ୍ୟମ ବାସ୍ତବରେ ପ୍ରଶଂସନୀୟ । ତାଙ୍କ ରଚିତ ଶତାଧିକ ନାଟକକୁ ଅନୁଧ୍ୟାନ କଲେ ଏକଥା ସ୍ପଷ୍ଟ ପ୍ରମାଣିତ ହେବ ଯେ ତାଙ୍କର ପ୍ରତିଟି ନାଟକ ଅନ୍ୟଠାରୁ ଭିନ୍ନ । ଶୈଳୀ, ବିଷୟବସ୍ତୁ, ବାର୍ତ୍ତା ଓ ସଂଳାପ ପ୍ରତିଟି ସୋପାନରେ ପରୀକ୍ଷା ନିରୀକ୍ଷା ଜାରୀ ରଖିଥିବା ନାଟ୍ୟକାର ଶ୍ରୀ ମହାପାତ୍ର ତାଙ୍କର ବହୁ ଚର୍ଚ୍ଚିତ ନାଟକ 'ଯୁଗ ଚରିତ ବୃତ୍ତାନ୍ତ' ପାଇଁ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଦ୍ୱାରା ପୁରସ୍କୃତ ହୋଇଛନ୍ତି । ତାଙ୍କ କାଳଜୟୀ ନାଟକ ମଧ୍ୟରେ 'ଯୋଡ଼ି ମହୁରୀ', 'ଅଥଚ ଅଥର୍ବ', 'ମୁଁ ହାଟ ବାହୁଡ଼ା', 'ଅଶାନ୍ତ ଅର୍ଜ୍ଜୁନ', 'ଆଶା' ଆଦି ନାଟକ ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କର ସାମଗ୍ରିକ ସୃଷ୍ଟିର ସ୍ୱୀକୃତି ସ୍ୱରୂପ 'ଦୀନକୃଷ୍ଣ ସ୍ମୃତି ପରିଷଦ', 'ଫକୀର ମୋହନ ସାହିତ୍ୟ ପରିଷଦ', 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆଦି ବହୁ ଅନୁଷ୍ଠାନ ପୁରସ୍କୃତ କରିଛନ୍ତି । ସଂପ୍ରତି ଏହି ନାଟକ 'ସାମ୍‌ନାରେ ଜଗନ୍ନାଥ' ସମଗ୍ର ଓଡ଼ିଶାରେ ଆଲୋଡ଼ନ ସୃଷ୍ଟି କରିପାରିଛି । ଶ୍ରୀ ମହାପାତ୍ରଙ୍କ ନେତୃତ୍ୱରେ ଓଡ଼ିଶାର ଅନ୍ୟତମ ଅଗ୍ରଣୀ ନାଟ୍ୟ ସଂସ୍ଥା 'ସ୍ରଷ୍ଟା' ଆଜି ସମଗ୍ର ଓଡ଼ିଶାରେ ନବ ନାଟ୍ୟ ଆନ୍ଦୋଳନର ପୁରୋଧା ସାଜିବାର ପ୍ରୟାସ ଜାରୀ ରଖିଛି । ଓଡ଼ିଶାର ନାଟ୍ୟ ସାହିତ୍ୟକୁ ଅଧିକ ଲୋକପ୍ରିୟ କରିବା ଲକ୍ଷ୍ୟ ନେଇ ଶ୍ରୀ ମହାପାତ୍ର ଓଡ଼ିଆ ଭାଷାର ଏକମାତ୍ର ଦୃଶ୍ୟ ଭିତ୍ତିକ ପତ୍ରିକା 'ରଂଗମଂଚ'ର ପରିକଳ୍ପନା ଓ ପ୍ରଯୋଜନା କରି ଇତିହାସ ସୃଷ୍ଟି କରିପାରିଛନ୍ତି ।



THE CREATOR